# ଆକାଶକୁ ସାତୋଟି ପାହାଚ



# ଆକାଶକୁ ସାତୋଟି ପାହାଚ

1963 NATIONAL AWARD, Govt. of India, Ministry of Education, IXth Children's Literature Competition

ଶାନ୍ତନୁକୁମାର ଆଚାର୍ଯ୍ୟ



# ଆକାଶକୁ ସାତୋଟି ପାହାଚ

ଲେଖକ :

**ଶାନ୍ତନୁକୁମାର ଆଚାର୍ଯ୍ୟ**

ପ୍ରକାଶକ :

**ସହଦେବ ପ୍ରଧାନ**

ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ

ବିନୋଦବିହାରୀ

କଟକ

**ଷଷ୍ଠ ସଂସ୍କରଣ**

**୧୯୯୭**

ମୁଦ୍ରଣ :

**ନବରଙ୍ଗ**

ଷ୍ଟୋନବେଡ୍, ତେଲେଙ୍ଗାବଜାର

କଟକ-୨

**ମୂଲ୍ୟ : ଟ ୧୨-୦୦**

# ପ୍ରକାଶକଙ୍କ ସୂଚନା

ପ୍ରଖ୍ୟାତ କଥାଶିଳ୍ପୀ ଓ ଔପନ୍ୟାସିକ ଶାନ୍ତନୁକୁମାର ଆଚାର୍ଯ୍ୟଙ୍କ ଦ୍ୱାରା ଲିଖିତ 'ଆକାଶକୁ ସାତୋଟି ପାହାଚ' ୧୯୬୩ ମସିହାରେ ଭାରତ ସରକାରଙ୍କ ଶିକ୍ଷା ବିଭାଗ ଆନୁକୂଲ୍ୟରେ ଆୟୋଜିତ ନବମ ଶିଶୁ ସାହିତ୍ୟ ପ୍ରତିଯୋଗିତାରେ ଜାତୀୟ ପୁରସ୍କାରପ୍ରାପ୍ତିର ଗୌରବ ଅର୍ଜନ କରିଥିଲା । ଏହି ପୁସ୍ତକରେ ସାତୋଟି ଭିନ୍ନ ଭିନ୍ନ ବିଷୟ ଓ ବିଶ୍ୱାସକୁ ବୈଜ୍ଞାନିକ ଦୃଷ୍ଟିରୁ ଲେଖକ ରମଣୀୟ କଥାଶୈଳୀରେ ରୂପ ଦେଇଛନ୍ତି । ଏକ ପକ୍ଷରେ ଯୁଗ ଯୁଗର ବିଶ୍ୱାସ ଓ ବାଲ୍ୟ-କୌତୁକ ଏବଂ ଅନ୍ୟ ପକ୍ଷରେ ବୈଜ୍ଞାନିକ ସତ୍ୟ—ଏହି ଦୁଇଟିକୁ ଯେପରି କାହାଣୀ ଛନ୍ଦରେ ଉପସ୍ଥାପନ କରାଯାଇଅଛି, ତାହା ବାସ୍ତବିକ ହୋଇଛି ଏକାନ୍ତ ହୃଦ୍ୟ ଓ ଉତ୍କଣ୍ଠାପୂର୍ଣ୍ଣ ।

ଏହି ପୁସ୍ତକର ପ୍ରଥମ ପ୍ରକାଶନଠାରୁ ଏପର୍ଯ୍ୟନ୍ତ ଦୀର୍ଘ ୩୩ ବର୍ଷ ବିତିଗଲାଣି । ଅଥଚ ଏଥିରେ ସନ୍ନିବେଶିତ କାହାଣୀଗୁଡ଼ିକ ଏବେ ମଧ୍ୟ କୌତୁକପୂର୍ଣ୍ଣ ମନେହୁଏ । ଶିଶୁମାନଙ୍କର ଉତ୍କଣ୍ଠା, ଜିଜ୍ଞାସା, କୌତୁକ ଓ ଆନନ୍ଦ ବୃଦ୍ଧି ପାଇଁ ଏସବୁ ଗଳ୍ପ ଏକାନ୍ତ ଉପାଦେୟ । ଏବେ ମଧ୍ୟ ଏହି ପୁସ୍ତକ ଶିଶୁ ଓ କିଶୋରମାନଙ୍କୁ ଯେ ଆନନ୍ଦ ଦେବ, ଏ ବିଶ୍ୱାସ ଆମର ଅଛି ।

———

# ସୂଚୀ








## ବିଜ୍ଞାପନ ଦେଖିଲି

ଦିନେ ସକାଳେ ମୁଁ ଖବରକାଗଜ ପଢ଼ୁଥାଏ । ବିଜ୍ଞାପନଟିଏ ଦେଖିଲି । ସେଥିରେ ଲେଖାଥିଲା :—

"ଯେଉଁମାନେ ରକେଟ୍ ପାଇଲଟ୍ ହେବାକୁ ଇଚ୍ଛା କରନ୍ତି, ସେମାନେ ନିମ୍ନଲିଖିତ ଠିକଣାକୁ ଆବେଦନ କରନ୍ତୁ :

"ସାମନ୍ତ ଚନ୍ଦ୍ରଶେଖର ମହାକାଶ ଗବେଷଣା କେନ୍ଦ୍ର,

ବମ୍ବେ—୧"

ମୁଁ ସେତେବେଳେ କଲେଜରେ ପଢ଼ୁଥାଏ । ଦୁଇବର୍ଷ ହେବ ଫ୍ଲାଇଂ କ୍ଲବ୍‌ରେ ଯୋଗଦେଇ ବିମାନଚାଳକ ହୋଇସାରିଥାଏ । ଆକାଶରେ ଉଡ଼ି ବୁଲିବାର ମଜା ଚାଖିଥାଏ । କିନ୍ତୁ ଛୋଟ, ଅଳ୍ପ ଉଚ୍ଚ ଆକାଶରେ ମନ ମାନୁ ନ ଥାଏ । ଇଚ୍ଛା ହେଉଥାଏ ମହାକାଶ ଆଡ଼କୁ ବିମାନଟାକୁ ଉଡ଼େଇ ନେବାକୁ । କିନ୍ତୁ ବିମାନ କି ଏତେ ଉଞ୍ଚ ଉଠେ ? ସେଥିପାଇଁ ଦରକାର ରକେଟ୍ ! ସେତିକିବେଳେ ମୁଁ ବିଜ୍ଞାପନଟି ପାଇଲି । ମୁଁ ଆବେଦନ କଲି ।

## ପହଲିମାନଙ୍କ ସାମନାସାମନି

ମୁଁ ମହାକାଶ ଗବେଷଣା କେନ୍ଦ୍ରର ଡାକରା ପାଇ ବମ୍ବେରେ ପହଞ୍ଚିଲି । ସେଠି ଦେଖିଲି, ଭାରତର ଅନେକ ଜାଗାରୁ ଆସିଥିବା ଅନେକ ପ୍ରାର୍ଥୀ ରୁଣ୍ଡ ହୋଇଛନ୍ତି । ତାଙ୍କ

## —ଦୁଇ—

ଭିତରୁ ଅନେକ ପହ୍ଲମାନ ଥିଲେ । ସେମାନେ ମତେ ଦେଖି ହସରେ ଉଡ଼େଇଦେଲେ । ମୁଁ ବେଶି ଡେଙ୍ଗା ନହେଁ । ହେଲେ ମୋ ମନ ତ ଯଥେଷ୍ଟ ଡେଙ୍ଗା ! ମୁଁ ହାରମାନୁଛି କୋଉଠି !




( ପହ୍ଲମାନଙ୍କ ସାମନାସାମନି )

ବ୍ୟସ୍ତ ନ ହୋଇ ମୁଁ ପରୀକ୍ଷାକୁ ଅପେକ୍ଷା କଲି । ମୋର ତ ସବୁ ଯୋଗ୍ୟତା ଥାଏ । ପ୍ରତିବର୍ଷ କଲେଜରୁ ସ୍ପୋର୍ଟସ୍‌ରେ ପ୍ରାଇଜ ପାଏ । ତା' ଛଡ଼ା ଆଉ ଏକ କଥା ବି ମୋର ଥାଏ । ଜଣେ ଗୁରୁଙ୍କଠୁଁ ମୁଁ ପ୍ରାଣାୟାମ ଆଉ ଆସନ ଶିଖିଥାଏ । ପ୍ରାଣାୟାମ ଦ୍ୱାରା ନିଃଶ୍ୱାସ ସାଧି ଜାଣିଥାଏ । ଆଉ, ଆସନ ତ ଆମର ଭାରତୀୟ ଯୋଗୀମାନଙ୍କର ବ୍ୟାୟାମ । ଏହି ବ୍ୟାୟାମ ବଳରେ ମୁନିଋଷିମାନେ ଅସାଧ୍ୟ ସାଧନ କରନ୍ତି । ମୁଁ ଏତକ ଅଧିକା ଶିଖିଥାଏ । କାହାକୁ ଏ କଥା ମୁଁ କହି ନ ଥାଏ ।

# ପରୀକ୍ଷା ଆରମ୍ଭ ହେଲା

ଢଂ କରି ଗୋଟାଏ ଘଣ୍ଟା ବାଜିଲା । ଜଣେ ଡାକ୍ତର କୋଉଠି ଥିଲେ ହଠାତ୍ ବାହାରି ଆସି ଆମ ଆଗରେ ଠିଆ ହେଲେ । ଆମକୁ ପରୀକ୍ଷାଗାର ଭିତରକୁ ନେଇ ସେ ହାତ ବଢ଼େଇ କଅଣ ଦେଖେଇଲେ । ଆମେ ଦେଖିଲୁ, ସାତୋଟି ବଡ଼ ବଡ଼ ବାକ୍ସ ଥୁଆ ହୋଇଛି । ତା ପରେ ଡାକ୍ତର କହିଲେ—

"ଶୁଣ ! ଏ ହଉଚି ସ୍ୱର୍ଗକୁ ଯିବା ପାଇଁ ସାତୋଟି ପାହାଚ ! ଯିଏ ଯେ ଟପିଯିବ ସେ ସ୍ୱର୍ଗକୁ ଯାଇପାରିବ ବୋଲି ଆମେ ଜାଣିବୁ । ତେଣୁ ସେ ରକେଟ୍ ପାଇଲଟ୍ ହବା ପାଇଁ ତାଲିମ ପାଇବ ।"

ଏତକ କହି ସେ ମୋ ଆଡ଼କୁ ଆଙ୍ଗୁଠି ଦେଖେଇଲେ । ମୁଁ ଗଲିଲି ପ୍ରଥମ ବାକ୍ସ ଆଡ଼କୁ ।

## ଅନ୍ଧାର ଗୁଡ଼ୁଗୁଡ଼ି ବାକ୍ସ

ଏ ବାକ୍ସ ନାଁ ଅନ୍ଧାର ଗୁଡ଼ୁଗୁଡ଼ି ବାକ୍ସ । ଯେ ରକେଟ୍‌ରେ ଯିବ ସେ ଅନ୍ଧାର ଆଉ ନିସ୍ତବ୍ଧିଆରେ ଅନେକ ଦିନ ରହିବ । ମୁଁ ଅନ୍ଧାରରେ ରହିପାରିବି କି ନାହିଁ ଏକଥା ଏଇଠି ପରୀକ୍ଷା ହେଲା ।

ଏ ବାକ୍ସ ଭିତରକୁ ମତେ ଠେଲିଦେଇ ଡାକ୍ତର କବାଟ ବନ୍ଦ କରିଦେଲେ । କବାଟ ପଡ଼ିଲା—ଠପ୍ ! ଗୁହୁଁ ଗୁହୁଁ ଧପ୍ କରି ଲିଭିଗଲା ବାକ୍ସର ଆଲୁଅଟା । ତା ପରେ ଘୋଟିଆସିଲା କଟ୍ କଟ୍ ଅନ୍ଧାର । ସବୁ ଶୂନ୍‌ଶାନ । ଏତେଟିକେ ଶବ୍ଦ ବି ନାହିଁ । ଠିକ୍ ଯେମିତି ମୁଁ ମହାକାଶରେ ଅଛି । ମହାକାଶ ଏହିଭଳି ଅନ୍ଧାର ଆଉ ନିଶବ୍ଦ !

ମୁଁ ଚୁପ୍ ହୋଇ ବସିଲି । ଭିଡ଼ମୋଡ଼ ହେବାକୁ କେଗା ନାହିଁ । ଗୋଟେ, ଅଣଓସାରିଆ ବାକ୍ସଟିଏ । ଠିକ୍ ରକେଟ୍ ପାଇଲଟ୍‌ର କୋଠରୀ ଭଳି । ସେଥିରେ ପୁଣି ଅନ୍ଧାର । ଚତୁର୍ଦ୍ଦିଗରେ ଝୁଲୁଥାଏ ତାର ମାଳ । ବାହାରେ ଥାଇ ମୋ ଦେହ ଆଉ ମନକୁ ସେମାନେ ପରୀକ୍ଷା କରି ନେଉଥାନ୍ତି—ଏଇ ତାର ଦ୍ୱାରା । ତାରଗୁଡ଼ାକ ଅଳନ୍ଧୁ ଭଳି ମୋ ଦେହରେ ଛନ୍ଦି ହେଇଯାଉଥାନ୍ତି । ତଥାପି ମୁଁ ବସିଥାଏ । ସତେ କି ମୁଁ ଯୋଗାସନରେ ବସିଛି ! ମୁଁ ଧ୍ରୁବ ! ଚତୁର୍ଦ୍ଦିଗରେ ମୋର ବାଘ, ଭାଲୁ, ସାପ ଆଉ ଅନ୍ଧାର !

ଢେକ ହେଲା । ଅଣ୍ଡାଳି କରି ଗୋଟାଏ ବୋତଲ ଆଣିଲି । କିନ୍ତୁ କଅଣ ଅଛି ଏଥିରେ କେଜାଣି ! ଅନ୍ଧମାନେ ଯେମିତି ଅକ୍ଷର ପଢ଼ନ୍ତି, ସେମିତି ଅଣ୍ଡାଳି ଅଣ୍ଡାଳି ମୁଁ ବୋତଲକୁ ଦେଖିଲି । ଉଠା ଉଠା ଅକ୍ଷର ଦଇଟା ମୋ ହାତରେ ବାଜିଲା । "ଦୁଧ"—




( ଅନ୍ଧାର ଗୁଡୁଗୁଡ଼ ବାକ୍ସ )

ମୁଁ ପଢ଼ିନେଲି । ତା ପରେ ବୋତଲକୁ ମୁହଁରେ ଦେଇ ଢେକ ମାରିଲି । କିଛି ସମୟ ପରେ ପଈସା ଲଗିଲା । ଗୋଟିଏ କଣକୁ ପରସ୍ରା କରିବା ପାଏଟି ଥାଏ । ଅଣ୍ଡାଳି ଅଣ୍ଡାଳି ତାକୁ ପାଇଲି । ତା' ପରେ ପୁଣି ବସିଲି ।

ହଠାତ୍ କବାଟ ଖୋଲିଗଲା । ବାହାରର ଆଲୁଅ ପ୍ରଥମ ଥର ପାଇଁ ଆଖିରେ ଯେମିତି ପଡ଼ିଲା ! ଆଲୁଅ ଦେଖି ମୁଁ ଆନନ୍ଦରେ କୁରୁଳି ଉଠିଲି ।

ବାକ୍‌ସ ଭିତରେ ମୁଁ ରହିଥିଲି ୪୮ ଘଣ୍ଟା । ଏତିକ ସମୟ ! କିନ୍ତୁ ବାକ୍‌ସର ଅନ୍ଧାର ଭିତରେ ସମୟକୁ ମୁଁ ଭୁଲିଯାଇଥିଲି । ମୋର ମନେ ହେଉଥିଲା, ସତେ କି ହଜାରେ ବର୍ଷର ତପସ୍ୟା ପରେ ମୁଁ ଆଖିଖୋଲି ବର୍ତ୍ତମାନ ଉଠୁଛି !

## ସଇତାନ-ଚକ୍ରୀ

ତା ପରେ ଦ୍ୱିତୀୟ ବାକ୍‌ସ ଭିତରେ ମୁଁ ପଶିଲି । ଏ ହେଉଚି "ସଇତାନ-ଚକ୍ରୀ ବାକ୍‌ସ" । ଏଥିରେ ପଶିଲା ପରେ ଏ ବାକ୍‌ସ ଘାଇଁ ଘାଇଁ ହୋଇ ବୁଲିବ । ରକେଟ୍ ଯେମିତି ପୃଥିବୀ ଚାରିପାଖେ ଘୂରେ, ସେମିତି । ଗୋଟାଏ ମଣିଷକୁ ଗୋଟାଏ ଲମ୍ବା ଦଉଡ଼ିରେ ବାନ୍ଧି ତାକୁ ଯଦି ଚକ୍ରୀଭଳି ବୁଲାଯାଏ, ସେ ମଣିଷକୁ ଯେମିତି ଲାଗିବ, ଏ



( ପ୍ରଦର୍ଶନୀ ପଡ଼ିଆରେ ଚକ୍ରୀ )

ବାକ୍‌ସରେ ଠିକ୍ ସେମିତି ଲାଗେ । ଏମିତି ବୁଲୁଥିଲାବେଳେ ମଣିଷର ମୁଣ୍ଡ ଠିକ୍ ନ ରହିବାର ସମ୍ଭାବନା ଥାଏ । ରକେଟ୍ ପାଇଲଟ୍‌ର ମୁଣ୍ଡ ତ ହଉଚି ବଡ଼ କଥା । ତାହା ଠିକ୍ ନ ରହିଲେ କେମିତି କାମ ଚଳିବ ? ଏଇ କଥା ବାକ୍‌ସରେ ପରୀକ୍ଷା କରାଯାଏ ।

ମୁଁ ବାକ୍‌ସରେ ପଶିଲି । ଗୋଡ଼ ଜାକି କରି ସୁବିଧାରେ ଶୋଇବାକୁ ମତେ ଡାକ୍ତର କହିଲେ । ତା ପରେ କବାଟ ବନ୍ଦ କରିବା ପୂର୍ବରୁ ସେ ମୋ ହାତରେ ଗୋଟିଏ ସ୍ୱିଚ୍ ଧରେଇ ଦେଇ କହିଲେ—

"ଏ ସୁଇଚ୍ ଟିପିଲେ ବାକ୍ସ ଭିତରେ ଆଲୁଅଟି ଲିଭିଯିବ । ନଚେତ୍ ସଦାବେଳେ ସେ ଆଲୁଅ ଜଳୁଥିବ । ତୁମର ଯେତେବେଳଯାକେ ହୋସ ଥିବ ଏ ସୁଇଚ୍‌କୁ ଟିପି ଦଉଥିବ । ଆଲୁଅ ଲିଭିଲେ ଆମେ ଜାଣିବୁ ଯେ ତୁମର ବଞ୍ଚିବା ପାଇଁ ଅଦ୍ଭୁତ ଇଚ୍ଛା ଅଛି । ଆଲୁଅ ଯଦି ନ ଲିଭିଲା, ତା ହେଲେ ଆମେ ଜାଣିବୁ ଯେ ତମେ ଡରିଗଲ । ତେଣୁ ଆମେ ଚକ୍ରୀ ବନ୍ଦ କରିଦେବୁ ।"

ବାକ୍ସ ବୁଲିଲା । ଅବଶ୍ୟ ବାକ୍ସ ଭିତରେ ପଶି ମୁଁ ଜାଣିପାରୁ ନ ଥାଏ ସେ ବାକ୍ସଟି କେତେ ଜୋରରେ ବୁଲୁଛି ବୋଲି । କିନ୍ତୁ ଡାକ୍ତର କହିବା ଅନୁସାରେ ମୁଁ ଆଲୁଅ ଲିଭାଉଥାଏ । ଆଲୁଅ ଲିଭିଲା ମାତ୍ରେ ସେମାନେ ଚକ୍ରୀର ଗତି ବଢ଼ାଉଥାନ୍ତି ।



( ଆଉ ଏ ହଉଛି—"ସଇତାନୀ ଚକ୍ରୀ" )

ଧୀରେ ଧୀରେ ମୋ ଦେହଟା କେମିତି ଝିମିଝିମ ହେବାକୁ ଆରମ୍ଭ କଲା । ତା ପରେ ମୋ ମାଉଁସ ସବୁ ଭୁହିଁ ହେଇ ପଡ଼ିଲା ଭଳି ଲାଗିଲା । ମୋ ଛାତି ଦୁମ୍ ଦୁମ୍ ପଡ଼ିଲା । ଯେତେ କି କିଏ ମୁଗୁର ପିଟୁଥାଏ ମୋ ଛାତି ଭିତରେ । ମୁଁ ଜାଣିଥାଏ ଅତି ଜୋର୍‌ରେ ଚକ୍ରୀରେ ବୁଲିଲେ ଦେହର ଓଜନ ବଢ଼ିଯାଏ । ରକ୍ତର ଓଜନ ବଢ଼େ । ତରଳ ସୀସା ଭଳି ରକ୍ତ ଓଜନିଆ ହେଇଯାଏ । ସୀସା ହଉଛି ସାଧାରଣ ଧାତୁମାନଙ୍କ ଭିତରେ ସବୁଠୁଁ ଓଜନିଆ ଜିନିଷ ।

ଓଃ ! ମୋ ଛାତିରେ ହାତୀଟାଏ ଚଢ଼ିଯାଉଚି ଯେମିତି !

କିନ୍ତୁ ମୁଁ ସୁଇଚ୍ ଟିପି ଦଉଥାଏ । ସେମାନେ ଜାଣିପାରୁଥାନ୍ତି ଯେ ମୋର ହୋସ୍ ତଥାପି ଅଛି ବୋଲି ।

ଅନେକ ସମୟ ପରେ ଚକ୍ରୀ ଥମିଗଲା । ଡାକ୍ତର ଦେଖାହେଲେ । ମୁଁ ପଚାରିଲି –

"ଆଜ୍ଞା ମୁଁ ରକେଟ୍ ପାଇଲଟ୍ ହୋଇପାରିବି ?"

ଡାକ୍ତର ଆହୁରି ପାଞ୍ଚୋଟି ବାକ୍ସ ଆଡ଼କୁ ହାତ ବଢ଼େଇଲେ । ସେ କହିଲେ— "ଆହୁରି ପାଞ୍ଚଟି ପାହାଚ ବାକି ଅଛି ।"

ତା ପରେ ଟିକିଏ ହସି ସେ ମୁହିଁକୁ ଚାହିଁ ପଚାରିଲେ—

"ଆଚ୍ଛା ! ତମର ତ ଖୁବ୍ ମନର ବଳ ଅଛି । ଦେହର ସହିବା ଶକ୍ତି ବି ବେଶ୍ ଭଲ । ତୁମେ ଜାଣ ? ଏଇ ଚକ୍ରୀରେ ତୁମେ ଘଣ୍ଟାକେ ୭୦,୦୦୦ ମାଇଲ ବେଗରେ ବୁଲୁଥିଲ । ଯଦି ସତକୁ ସତ ରକେଟ୍‌ରେ ଯାଉଥାନ୍ତ, ତା ହେଲେ ଏତେବେଳକୁ ତମେ ଯାଇ କୋଉଁଠି ହୁଅନ୍ତଣି !"

ମନେ ମନେ ମୁଁ ଗୁରୁଙ୍କୁ ସ୍ମରଣ କଲି । ପ୍ରାଣାୟାମ ଆଉ ଆସନ ଯୋଗୁଁ ସିନା ମୁଁ ଏତେ କଷ୍ଟ ସହିନେଲି !

## ଜଉଘର ଓ ନାଦଘର

ତା' ପରେ ଯୋଉ ବାକ୍ସକୁ ମୁଁ ଗଲି, ତା ନାଁ ହଉଚି "ଜଉଘର" । ନାଁଟା ଶୁଣି ତ ମୁଁ ଚମକିଲି । ପାଣ୍ଡବମାନଙ୍କୁ ଏମିତି ଗୋଟିଏ ଘର ଭିତରେ ପୂରେଇ କୌରବମାନେ ନିଆଁ ଲଗେଇ ଦେଇଥିଲେ ।

ସତକୁ ସତ ସେଇଆ ହେଲା । ଘର ଭିତରେ ମୁଁ ଯେମିତି ପଶିଚି, ସେ ଘରକୁ ତତେଇ ଦିଆଗଲା । ରକେଟ୍ ଯେତେବେଳେ ମହାକାଶରୁ ଫେରି ପୃଥିବୀର ବାୟୁମଣ୍ଡଳ ଦେହରେ ଘଷି ହୁଏ, ସେତେବେଳେ ରକେଟ୍ ଏମିତି ତାତି ଉଠେ ! ଚାହୁଁ ଚାହୁଁ ମୋ ଚାରିପାଖରୁ ହୁଳା ଉଠିଲା । ଝାଳନାଳ ଆଣିଏ ହେଲେ ସୁଦ୍ଧା ମୁଁ ବସି ରହିଲି ।

ଅଧଘଣ୍ଟାଏ ପରେ ମୁଁ ପଦାକୁ ଆସିଲି ।

ଡାକ୍ତର କହିଲେ –

"ଆଚ୍ଛା ! ନିଆଁରେ ବି ତମେ ପୋଡ଼ିବ ନାହିଁ, ଦେଖୁଛି ।"

ପରେ ଶୁଣିଲି, ମୋ ଘରର ଉତ୍ତାପ ହୋଇଥିଲା ୧୩୦ ଡିଗ୍ରୀ ଫାରେନ୍‌ହାଇଟ୍ ।

ସେଠୁ ଯାଇ ମୁଁ "ନାଦଘର" ଭିତରେ । ଏଠି ମୋ କାନପାଖେ ନାନା-ପ୍ରକାର ଶବ୍ଦ କରାହେଲା । କାନରେ ବଣ୍ଡାମାରି ମୁଁ ବସିଥାଏ । ନଚେତ୍ କାନ ପରଦା ଫାଟି ଯାଇଥାନ୍ତା । ଧୀରେ ଧୀରେ ଶବ୍ଦ ବଢ଼ିଉଠିଲା । ସେ ଶବ୍ଦକୁ ମାପିଲେ ବୋଧହୁଏ



( ଆଛା ! ନିଆଁରେ ବ ଚମେ ପୋଡ଼ିବ ନାହିଁ, ଦେଖୁଛୁ । )

ହଜାରେ ରେଲଇଞ୍ଜିନ୍ ହୁଇସିଲ ଶବ୍ଦ ସଙ୍ଗେ ସମାନ ହେବ । ମୋ ଦେହର ଚମଟା ଢୋଲ ଚମଡ଼ା ଭଳି ଥରୁଥାଏ । ମୁଣ୍ଡରେ ହାତ ଦେଇ ଦେଖିଲି ଯେ ମୁଣ୍ଡ ବାଳଗୁଡ଼ାକ ଠିଆହୋଇଛି । ଡାକ୍ତର କହିଲେ, ଶବ୍ଦର ଧକକାରେ ବାଳଗୁଡ଼ାକ ଠିଆ ହୁଏ ।

ରକେଟ୍ ପାଇଲଟ୍‌ର ମୁଣ୍ଡ ଶବ୍ଦ ସମ୍ଭାଳି ନ ପାରିଲେ ବଡ଼ ଅଡ଼ୁଆ କଥା । ରକେଟ୍ ଯେତେବେଳେ ମାଟି ଉପରୁ ଉଠେ, ଏକ ସୃଷ୍ଟିଛଡ଼ା ଶବ୍ଦ କରେ । ଏ ଶବ୍ଦରେ ଲୋକ ପାଗଳ ହୋଇଯାଇପାରେ ।

• • ଯାହାହେଉ, ମୁଁ ନାଦଘର ଭିତରୁ ସୁରୁଖୁରୁରେ ବାହାରିଲି ।



( ସେଠି ପାଇ ମୁଁ ପଶିଲି ନାଦଘରେ )

## ନାଚବାକ୍ସ ଓ ଭ୍ରମଣଶୂନ୍ୟ ବାକ୍ସ

ଏତେ କଷ୍ଟ ଦେଇ ମଧ୍ୟ ସେମାନେ ମତେ ପୁଣି ପରୀକ୍ଷା କରୁଥାନ୍ତି । ପଞ୍ଚମ ବାକ୍ସ ନାଁ ହେଉଚି ନାଚବାକ୍ସ ! ରକେଟ୍‌ରେ ବସି ଶୂନ୍ୟକୁ ଉଠୁଥିଲାବେଳେ ଏମିତି ଗୁଡ଼ାଏ ଧକ୍‌କା ମଣିଷକୁ ସହିବାକୁ ହୁଏ । ତା ଛଡ଼ା ମଣିଷର ବିପଦ ରହୁଛି କି ନାହିଁ ସେକଥା ଜାଣିବା ଦରକାର । ଏଥିପାଇଁ ସେମାନେ ମତେ ନାଚବାକ୍ସରେ ପୂରେଇଲେ । ବାକ୍ସ ନାଚିଲା—କୁଦିଲା—ବୁଲିଲା । ମୁଁ ବି ବାକ୍ସ ସାଙ୍ଗେ ନାଚୁଥାଏ । କିନ୍ତୁ ସବୁବେଳେ ମୋ ମୁଣ୍ଡ ଉପରକୁ ଥାଏ—ଆକାଶ ଆଡ଼କୁ । ତା ମାନେ, ଆକାଶ ଆଡ଼କୁ ମୁହଁକରି ମୁଁ

ରକେଟ୍‌ ଚଳେଉଥାଏ । ମୋ ମୁହଁ ଯଦି ଆକାଶକୁ ନ ହୋଇ ତଳକୁ ହୋଇଥାନ୍ତା ତା ହେଲେ ମୋ ରକେଟ୍‌ ଆକାଶକୁ ନ ଯାଇ ମାଟିରେ କଚ ହୋଇଯାଇଥାନ୍ତା ।

ନାଚଘରୁ ବାହାରିବା କ୍ଷଣି, ମତେ ନେଇ ସେମାନେ ଷଷ୍ଠବାକ୍‌ସ ଭିତରେ ରଖିଲେ । ଏ ବାକ୍‌ସ ନାଁ ହଉଛି ଭାରଶୂନ୍ୟ ବାକ୍‌ସ ! ଏଠି ଏମିତି କଅଣ କୌଶଳ ଥାଏ ଯେ ଏ ବାକ୍‌ସରେ ପଶିଲା ପରେ ଦେହରୁ ସବୁଯାକ ଓଜନ ପଳାଇଯାଏ । ଦେହ ଥାଏ; କିନ୍ତୁ ଓଜନ ନ ଥାଏ । ଭାରି କଷ୍ଟକର ଅବସ୍ଥା ଏ । ପୃଥିବୀ ଉପରକୁ ଅନେକ ବାଟ ଗଲେ ଏମିତି ଗୋଟିଏ ଅଞ୍ଚଳ ପଡ଼େ । ଏଠି ରକେଟ୍‌ ପାଇଲଟ୍‌ ଦେହରୁ ଓଜନ ଚାଲିଯାଏ । ଫଳରେ ବଞ୍ଚିକରି ମଧ୍ୟ ପାଇଲଟ୍‌ ବୁଝିପାରେନା ଯେ ସେ ବଞ୍ଚିଛି କି ମଲାଣି ବୋଲି ।

ଯାହାହେଉ, ଏ ବାକ୍‌ସକୁ ଟପିଲି ମୁଁ । ବାକି ରହିଲା ଶେଷ ବାକ୍‌ସ !

## ମହାଶୂନ୍ୟ ବାକ୍‌ସ

ଏ ହଉଛି ସପ୍ତମ ପାହାଚ । ବେଶି କଷ୍ଟ ହୁଏ ଏଇଠି । ହେଲେ, ପ୍ରକୃତ ରକେଟ୍‌ ଚଢ଼ିଲାଭଳି ଲାଗେ ଏଇ ଘରେ । ରକେଟ୍‌ ପାଇଲଟ୍‌ର ପୋଷାକ ଆଉ ମୁଖା ମିଳେ ଏଠି । ସ୍ୱଚ୍ଛ ପ୍ଲାଷ୍ଟିକ୍‌ର ମୁଖାଟା ଲଗେଇ ଦେଇ ଏଠି ବସିଗଲେ ଆଃ ! ଠିକ୍‌ ରକେଟ୍‌ ତ !

ପ୍ରଥମେ ସେମାନେ ମୋତେ ଯଥେଷ୍ଟ ଅମ୍ଳଜାନ ଦେଲେ । ତା ପରେ ମୁଁ ରକେଟ୍‌ ପାଇଲଟ୍‌ର ପୋଷାକ ପିନ୍ଧି ମହାଶୂନ୍ୟ ବାକ୍‌ସ ଭିତରକୁ ଗଲି । ମୋ କାନ୍ଧରେ ଝୁଲୁଥିବା ଅମ୍ଳଜାନ ଥଳୀରୁ ମୁଁ ନିଃଶ୍ୱାସ ନେଉଥାଏ ।

ଏଥିମଧ୍ୟରେ ମୋ ଆସନ ପାଖରେ ଗୋଟିଏ ଗ୍ଲାସରେ ଗ୍ଲାସେ ପାଣି ଆଣି ରଖି ଦିଆଗଲା । ଅବଶ୍ୟ ପିଇବା ପାଇଁ ନୁହେଁ ସେ ପାଣି । ତେବେ କଅଣ ପାଇଁ ?

ମୁଁ ଅପେକ୍ଷା କଲି । ହଠାତ୍‌ ଗୁଁ ଗୁଁ ହୋଇ ଗୋଟିଏ ଯନ୍ତ୍ର ଚାଲିଲା । ସାଙ୍ଗେ ସାଙ୍ଗେ ମୁଁ ବୁଝିପାରିଲି ଯେମିତି ମୋ ଦେହକୁ କେହି ଶୋଷିବାକୁ ଆରମ୍ଭ କରିଦେଲା । ମୋ ଚାରିପାଖୁ ପବନ ଶୋଷି ହୋଇଯାଉଥିଲା । ପବନର ସ୍ଥାନ ପୂରଣ କରିବା ପାଇଁ ମୋ ପୋଷାକଟା ଫୁଲି ଫୁଲି ଉଠିଲା ।

ମୋ ଆଖି ଆଗରେ ଗୋଟାଏ ମିଟର କଣ୍ଟା ଆସ୍ତେ ଆସ୍ତେ ଘୂରୁଥିଲା । ସେଇଟା ହଉଛି ଉଚ୍ଚତା ମାପିବା ଯନ୍ତ୍ର । ସେ ପଢ଼ୁଥିଲା –

"ଦଶ ହଜାର ଫୁଟ ! ପନ୍ଦର ହଜାର···କୋଡ଼ିଏ···ତିରିଶ···ଚାଳିଶ··· ପଚାଶ···ଷାଠିଏ ହଜାର ଫୁଟ !"

## —ଏଗାର—

ଓଃ !

ତା' ପରେ "ସତୁରି ହଜାର ଫୁଟ !"

ମୁଁ ପ୍ରକୃତରେ ଉପରକୁ ଉଠୁ ନ ଥିଲି । ସତୁରି ହଜାର ଫୁଟ ଉଚ୍ଚରେ ପହଞ୍ଚିଲେ ଯାହା ହବାର କଥା, ସେସବୁ କଥା ହେଉଥାଏ ସେଇ ଟିଣଘର ଭିତରେ । ମୋ



( ମିଟର କଣ୍ଟା ଉଠିଲା—ପଚସ୍ତରି ହଜାର ଫୁଟ ଉଚ୍ଚ ! )

ପୋଷାକ ଫୁଲି ଉଠୁଥାଏ । ମୁଁ ଜାଣିଥାଏ ସେ ପୋଷାକ ନ ଥିଲେ ମୋ ଚମ ବୋଧହୁଏ ଏଇଭଳି ଫୁଲି ଉଠି ଗୋଟାଏ ବେଙ୍ଗଭଳି ଫାଟିସାରନ୍ତାଣି ।

ପରୀକ୍ଷା କରିବା ପାଇଁ ମୁଁ ହାତରୁ ଗ୍ଲୋଭ୍‌ଟିକୁ କାଢ଼ିଦେଲି ।

ଓଃ ! ମୋ ଆଖି ବୁଜି ହେଇଗଲା ।

ମୋ ହାତପାପୁଲିଟା ଗୋଟାଏ ବେଲୁନ୍ ଭଳି ହଠାତ୍ ଫୁଲି ଉଠିଲା ।

ମିଟର କଣ୍ଟା ଉଠିଲା—

"ପଚସ୍ତର ହଜାର ଫୁଟ !"

ସେତକବେଳେ ମୁଁ ତଳକୁ ଗ୍ଦହିଁଲ ।

ଟଗବଗ ଟଗବଗ ହେଇ ଗିଲ୍ସକ ପାଣି ଫୁଟିବାକୁ ଆରମ୍ଭ କରିଦେଇଥିଲା । ଉତ୍ତାପ ଯୋଗୁଁ ନୁହେଁ, ଲଘୁଗ୍ଚପ ଯୋଗୁଁ । ପଚସ୍ତର ହଜାର ଫୁଟ ଉଚ୍ଚତାରେ ପାଣି, ପାଣି ହୋଇ ରହିପାରିବ ନାହିଁ । ତାହା ବାଷ୍ପ ହୋଇ ଉଡ଼ିଯାଏ ।

ଡାକ୍ତର କହିଲେ—

"ଯଦି ପୋଷାକ ନ ଥାନ୍ତା, ତା ହେଲେ ରକ୍ତ ଏଇଭଳି ବାଷ୍ପ ହୋଇ ଉଡ଼ି ଯାଆନ୍ତାଣି !"

ମୋ ପୋଷାକରେ ଗୋଟିଏ ମାଇକ୍ରୋଫୋନ୍ ଲାଗିଥାଏ । ମାଇକ୍ରୋଫୋନ୍‌ଟିକୁ ହଠାତ୍ ମୁହଁ ପାଖକୁ ନେଇ ମୁଁ କହିଉଠିଲି—

"ହାଲୋ ! ମୁଁ ଯୁଧିଷ୍ଠିର ପାଲଟି ଯାଇଛି ! ନରକ ଦର୍ଶନ ଶେଷ ହେଲା । ଏଥର ମୁଁ ସ୍ୱର୍ଗକୁ ଯିବ !"

ତୁମେ ଶୁଣିଲେ ନିଶ୍ଚୟ ଖୁସି ହେବ ଯେ ମୁଁ ରକେଟ୍-ପାଇଲଟ୍ ହେବା ପାଇଁ ମନୋନୀତ ହେଲି । ଶହେଜଣ ଭିତରୁ ଆମେ ତିନିଜଣ ମାତ୍ର ମନୋନୀତ ହେଲୁ । ପଛିଲମାନମାନେ କୁଆଡ଼େ ଗଲେ ମୁଁ ଜାଣେନା । କିନ୍ତୁ ତୁମେ ଶୁଣିଲେ ଆହୁରି ଆଶ୍ଚର୍ଯ୍ୟ ହେବ ଯେ ଏ ଖବର ଶୁଣି ମୋର ଗୁରୁ ଆଦୌ ଆଶ୍ଚର୍ଯ୍ୟ ହେଲେ ନାହିଁ । ହସି ହସି ସେ କେବଳ କହିଲେ—

"ଏ କିଛି ନୂଆ କଥା ନୁହେଁ । ଦେହ ଆଉ ମନକୁ ସାଧି କରିପାରିଲେ ମଣିଷ ଆହୁରି ଅସାଧ୍ୟ ସାଧନ କରିପାରେ ।"

---




ରାତି ଦୁଇଟା । ଶୀତଳ ନିଘୋଡ଼ ନିଦରେ ଶୋଇଥାଏ । ମଝିରେ ମଝିରେ ସେ ଚମକି ଉଠୁଥାଏ । ତା ଦେହରୁ ଝାଳ ବୋହିଯାଉଥାଏ । ତାର ମା' ନିଦରୁ ଉଠି ଆଲୁଅ ଲଗେଇଲେ । ପଙ୍ଖାଟାକୁ ବୁଲେଇ ଦେଲେ ଶୀତଳ ଆଡ଼କୁ । ତା'ପରେ ସେ ଗାଧୋଇବା ଘରକୁ ଯାଇ ପାଣିକଳ ଖୋଲି ଗିଲାସେ ପାଣି ପିଇଲେ ।

ଶୀତଳ ତଥାପି ଚମକି ଉଠୁଥାଏ । ସେ ସ୍ୱପ୍ନ ଦେଖୁଥାଏ —

ପ୍ରଥମେ ସେ ଶୁଣିଲା କୁଳୁକୁଳୁ କରି ଯେମିତି ଝରଣା ଗୋଟାଏ ତା ଆଡ଼କୁ ବୋହି ଆସିଲା । କାଲୁବାଲୁ ହେଇ ଶୀତଳ ଚାହିଁଲା ଚାରିଆଡ଼କୁ । ଝରଣାଟା କେଉଁ ଦିଗରୁ ବୋହି ଆସୁଥିଲା କେଜାଣି ! ହଠାତ୍ ସେ ଦେଖିଲା ଝରଣାଟା ଗୋଟାଏ ସାପଭଳି ସାଲୁବାଲୁ ହେଇ ଗୋଟାଏ ପାହାଡ଼ ଉପରୁ ଗଡ଼ି ଆସୁଚି – ତା ଆଡ଼କୁ ।

ଶୀତଳ ପାଟି କରି ଡାକିଲା—

"ଆରେ ! ତୁ କିଏ ? ତୁ କିଏ ? ଏମିତି ମାଡ଼ି ଆସୁଚୁ କାହିଁକି ମୋ ଆଡ଼କୁ ?"

ଶୀତଳର ସେ କାଉଳିବାଉଳି ଡାକ ଶୁଣି ଝରଣାକୁ ଯେମିତି ହସ ଲାଗିଲା ।

ଝରଣା ଫେଁ କରି ହସିଦେଲା ।

ଝରଣାର ସେଇ ଫେଁ ଫେଁ ହସରେ ଶୀତଳ ଆହୁରି ଚମକି ଉଠିଲା । ତା'ର ମନେହେଲା ଯେମିତି କିଏ ଗୋଟାଏ ଫଁ ଫଁ ନିଃଶ୍ୱାସ ମାରି ତାକୁ ଗୋଡ଼ଉଚି ।

ଶୀତଳ ପୁଣି ଡାକ ଛାଡ଼ିଲା –

"ଆରେ ! ତୁ କିଏ ? ସାପ ? ନା କୁମ୍ଭୀର !"

କୁମ୍ଭୀର କି ସାପ ନାଁ ଶୁଣି ଝରଣାକୁ ଆହୁରି ହସ ଲାଗିଲା । ସେ ବି ଟିକିଏ ଗର୍ବରେ ଫୁଲି ଉଠିଲା । ତାରି କୁଳୁକୁଳୁ ଆଉ ଫଁ ଫଁ ଶବ୍ଦକୁ ମିଶେଇ ସେ ଶବ୍ଦ କରି ଉଠିଲା—

ଡବ, ଡବ, ଡବ···ଯେମିତ କ ଗାତୁଆ ମାଟି ଉପରେ ନଈର ସୁଅ ମାଡ଼ ଚ୍ଳଯାଏ !

ଶୀତଳକୁ ଶୁଭିଲା ଯେମିତ ହାତୀଟାଏ ନଈରେ ପଶି ପାଣି ପିଉଛି ଆଉ ଶୁଣ୍ଡରେ ଡବ, ଡବ ଶବ୍ଦ କରୁଚ ! ହାତୀର ଚେହେରା ମନେପଡ଼ବାରୁ ଶୀତଳ ଆହୁରି ଡରଗଲା । ସେ ପୁଣି ପାଟି କରି ଉଠିଲା—

"ଇଲୋ ବୋଉଲୋ, ହାତୀଟାଏ !"

ଗର୍ବରେ ଝରଣା ଆହୁରି ଫୁଲି ଉଠିଲା । ଏଥରକ ଫୁଲଉଠି ସେ ସମୁଦ୍ର ପାଲଟି ଗଲା ଆଉ ଭୀମରଡ଼ ଛାଡ଼ କଲ୍ଲୋଇଲା ।

ଭୁସ୍ – ଘୁଘୁଘୁଘୁ – ଭୁସ୍ !

ଆଖି ଆଗରେ ସମୁଦ୍ରକୁ ଦେଖି ଶୀତଳର ଦେହ କାଲୁଆ ହେଇଗଲା । ସମୁଦ୍ରକୁ ସେ ପ୍ରାଣରେ ଭୟ କରୁଥିଲା । ସମୁଦ୍ରର ଢେଉକୁ ଅନନ୍ତ ନାଗସାପର ଫଣାବୋଲି ଭାବି ସେ ସମୁଦ୍ରଠାରୁ ଦୂରେଇ ହେଇ ରହୁଥିଲା । କିନ୍ତୁ ଯେତେବେଳେ ସମୁଦ୍ର ତାକୁ ଚତୁର୍ଦ୍ଦିଗରୁ ଘେରିଗଲା, ସେ ଆଉ ଯିବ କୁଆଡ଼େ ? ବାଧ ହୋଇ ହାତଗୋଡ଼ ଛାଟି ପହଁରିବାକୁ ଲାଗିଲା । ସେତେଦିନ ଯାକେ ଶୀତଳ ଜାଣିଥିଲା ଯେ ତାକୁ ପହଁରା ଆସେ ନାହିଁ ବୋଲି । କିନ୍ତୁ ଏ କି ଆଶ୍ଚର୍ଯ୍ୟ ! ହାତ ଗୋଡ଼ ଛାଟିବା ମାତ୍ରେ ସେ ସମୁଦ୍ରରେ ପହଁରିବାକୁ ଲାଗିଲା ।

ଶୀତଳକୁ ହଠାତ୍ ପହଁରା ଆସିଯିବାର ଦେଖି ଝରଣା ବୋଧହୁଏ ରାଗିଗଲା । ଝରଣା ତ ଆଗରୁ ସମୁଦ୍ର ପାଲଟିଥିଲା । ବର୍ତ୍ତମାନ ଢେଉ ଉପରେ ଢେଉ ପିଟି ସେ ଶୀତଳକୁ ସିଧି ବୁଡ଼ା ଦେବାକୁ ମନକଲା ।

କିନ୍ତୁ ଶୀତଳ ଗୋଟାଏ ବୁଦ୍ଧି କଲା । ସେ ଢେଉ ସାଙ୍ଗରେ ଯୁଦ୍ଧ ନ କରି ଢେଉ ଆସିବା ପୂର୍ବରୁ ଟୁବ୍ କରି ବୁଡ଼ଗଲା । ପାହାଡ଼ ଭଳିଆ ଢେଉଟା ଶୀତଳର ମୁଣ୍ଡ ଉପରେ ସୁରକିନା ଚ୍ଳିଗଲା । ଢେଉ ଚ୍ଳିଯିବାରୁ ଶୀତଳ ପୁଣି ମୁଣ୍ଡ ଟେକିଲା । ଢେଉ ପୁଣି ଆସିଲା । ଶୀତଳ ପୁଣି ଢେଉ କାଟିଲା ।

ଏଥର ଶୀତଳ ପୁଣି ଜିତିଯିବାରୁ ଝରଣାର ରାଗ ବଢ଼ିଉଠିଲା । ହଠାତ୍ ଥିଲା ଥିଲା ରୂପ ବଦଳେଇ ସେ ଗୋଟାଏ ମସ୍ତବଡ଼ ସ୍ୟାହ୍ର ଭୁଆଁତ ଭଳି ଆକାର ଧରିଲା । ନେଳୀ କଟକଟ ସ୍ୟାହ୍ର ଭିତରେ ଶୀତଳ ପହଁରିବାକୁ ଲାଗିଲା । ନେଳୀ ସ୍ୟାହ୍ର କୁଣ୍ଡରେ ପଡ଼

ଶୀତଲ ଲଟର ପଟର ହେଲା । ସ୍ୟାହ୍ଵଗୁଡ଼ାକ ତା ଆଖି କାନରେ ପଶିବାରୁ ତାକୁ ଘୋର ଅସୁବିଧା ଲାଗିଲା । ଅସ୍ତବ୍ୟସ୍ତ ହୋଇ ଶୀତଲ ଚତୁର୍ଦ୍ଦିଗକୁ ଚାହିଁଲା ।

ଠିକ୍ ଏତିକିବେଳେ ସ୍ୟାହ୍ଵ କୁଣ୍ଡଳୀ ଟିକିଏ ଭୁଟି ଉଠିଲା । ହଠାତ୍ ଭୁଟିଗୁଡ଼ାକ ବଡ଼ଉଠିଲା । ଶୀତଲ ଜାଣିଲା ସେ ଭୁଟିର ଅର୍ଥ କଅଣ ! ଟିକିକ ପରେ ଗୋଟାଏ ମସ୍ତ ତିମିମାଛ ତା' ପାଖରେ ଉଠିଲା । ସ୍ୟାହ୍ଵଗୁଡ଼ାକ ପିଚକାରି ଭଳି ବାହାରୁଥାଏ ତାର ବିରାଟ ପାଟି କଡ଼ରୁ—ଉପରକୁ ।

ହଠାତ୍ ତିମିମାଛଟା ଆଁ ମେଲେଇ ଦେଲା । ଗୋଟାଏ ମସ୍ତବଡ଼ ଗୁମ୍ଫା ଭିତରକୁ ଶୀତଲ ଶୋଷି ହୋଇଗଲା । ପ୍ରଥମେ ସେଇ ଗୁମ୍ଫା ଭିତରେ ପଶି ଶୀତଲକୁ ଟିକିଏ ଆକତା ଆକତା ଲାଗିଲା । କିନ୍ତୁ ଠିକ୍ ଏତିକିବେଳେ ଗୁମ୍ଫା ଭିତରକୁ ଗୋଟାଏ ମସ୍ତ କଇଁଛ ବି ପଶିଆସିଲା । କଇଁଛଟା ଶୀତଲକୁ ଟିକିଏ ଶୁଂଘାଶୁଂଘି କଲା । ତା'ର ବିରାଟ ବେକଟାକୁ ଲମ୍ବେଇ ସେ ଶୀତଲ ଦେହରେ ଟିକିଏ ଘଷିଦେଲା । ତା ପରେ ଭୁଟ୍‌ଭୁଟ୍ କରି ପବନ ଛାଡ଼ିଲା । ସେଇ ପବନକୁ ନିଃଶ୍ୱାସ ମାରି ଶୀତଲ ଚୁପ୍ ହୋଇ ପଡ଼ିରହିଲା ତିମିମାଛ ପେଟ ଭିତରେ ।

ପବନ ପାଇ ଶୀତଲ ଟିକିଏ ଫୂର୍ତ୍ତିହେଲା । ଚାରିଆଡ଼କୁ ଆଖି ବୁଲେଇ ସେ ଦେଖିଲା । ବିଶାଳ ଘରଟାଏ ଭଳି ହୋଇଥାଏ ସେ ତିମିମାଛର ପେଟଟା । ଶୀତଲ ସେ ଘରର କାନ୍ଥ ପାଖକୁ ପହଁରି ପହଁରି ଗଲା । ଗୋଟାଏ ଜାଗାରେ ଆଖି ଦେଇ ସେ ବାହାରକୁ ଅନେଇଲା ।

ଆରେ ବାଃ ! ବଢ଼ିଆ ତ !

ସତେ କିମିତି ପେଟର ସେଇ ଜାଗାରେ ଗୋଟାଏ କାଚଝରକା କିଏ ବସେଇ ଦେଇଛି ! ଶୀତଲ ସେଇ କାଚଝରକା ଦେଇ ବାହାରକୁ ଚାହିଁଲା । ଚତୁର୍ଦ୍ଦିଗ ଗାଢ଼ ନୀଳ—ସେ ଦେଖିଲା । ଖାଲି ସେତିକି ନୁହେଁ, ସେ ଦେଖିଲା ଉପରୁ ସୂର୍ଯ୍ୟକିରଣ ପଶି ଆସୁଥିଲା ପାଣି ଭିତରକୁ । ସେଇ ଆଲୁଅରେ ସେ ଦେଖିଲା—

ଯୋଉ ଝରଣା ସ୍ୟାହ୍ଵକୁଣ୍ଡର ସମୁଦ୍ର ହୋଇ ତାକୁ ଡରେଉଥିଲା, ସେ ଝରଣା ପେଟ ଭିତରେ ଆଉ ଏକ ନୂଆ ସଂସାର ! କେବଳ ଗଛଲତା ନୁହନ୍ତି, ପାହାଡ଼ ପର୍ବତ ଆଉ ବିଚିତ୍ର ଜୀବଜନ୍ତୁଙ୍କର ଘର ଏଠି । ମାଟି ଉପରଠାରୁ ମଧ୍ୟ ଏ ଜାଗା ଆହୁରି ସୁନ୍ଦର ।

ଏହି ସମୟରେ ଶୀତଲ ଚମକି ଉଠିଲା । ଝରକା ଆରପାଖରୁ ସେ ଦେଖିଲା ଗୋଟିଏ ସୁନ୍ଦର ମୁହଁ ତାକୁ ଅନେଇଛି !

## —ଷୋହଳ—

"ତୁ କିଏ ?" ଶୀତଳ ପାଚିରିଲା ।

ମୁହଁଟି ଟିକିଏ ମୁରୁକିହସା ଦେଇ ପୁଣି ଉଭେଇଗଲା । ସେ ଚାଲିଗଲାବେଳେ କେବଳ ଶୀତଳ ତାର ସ୍ୱରୂପ ଦେଖିବାକୁ ପାଇଲା । ମଣିଷର ମୁହଁ, କିନ୍ତୁ ଦେହଟା ତାର ମାଛଭଳି !

ଏହି ସମୟରେ ଶୀତଳ ପାଖରେ ଥିବା ସେଇ କଇଁଛଟି ତା ମୁହଁକୁ ଲମ୍ବେଇ ଆଣି ଶୀତଳ କାନରେ କହିଲା—

"ପଳେଇ ଆ ! ପଳେଇ ଆ ! ତିମିମାଛ ହାଇ ମାରୁଚି ! ଏତିକିବେଳେ ଆ ଖସିଯିବା !"

କଇଁଛଟି ଶୀତଳର ବନ୍ଧୁଭଳି କଥା କହୁଥିବାରୁ ଜାଣି ଶୀତଳ ସେ କଇଁଛ ପ୍ରତି ଖୁବ୍ କୃତଜ୍ଞ ହେଲା ।

ଝରଣା ଦେଖିଲା, ସେ ଆଉ ଶୀତଳର ଅନିଷ୍ଟ କରିପାରିବ ନାହିଁ । ଶୀତଳ ପାଣିକୁ ସାଧ୍ୟ କରି ଜାଣେ । ତେଣୁ ସେ ତାର ସେଇ ଭୀଷଣ ସମୁଦ୍ରବେଶ ଛାଡ଼ି ଝରଣାଟିଏ ହେଇଗଲା । ତା ପରେ ଶୀତଳ ଦେଖିଲା—ସେଇ ସରୁ ଝରଣାଟି ସାପଭଳି ହେଇ ତାଙ୍କ ପାଇପ ଭିତରକୁ ପଶିଗଲା ।

ସକାଳ ହେଲା । ଶୀତଳର ନିଦ ଭାଙ୍ଗିଲା । ମୁହଁ ଧୋଇବା ପାଇଁ ସେ ପାଇପ ପାଖକୁ ଆସିଲା । ଗତ ରାତିର ସ୍ୱପ୍ନ ତାର ମନେଥାଏ । ହାତକୁ ଆଞ୍ଜୁଳା କରି ଆଞ୍ଜୁଳାଏ ପାଣି ଧରି ସେ ପାଣିକୁ ଚାହିଁ ଶୀତଳ କହିଲା—

"ଦେଖ୍ ! ତୋ ପେଟରେ ଏତେ କଥା ଅଛି ବୋଲି ମୁଁ ଜାଣି ନ ଥିଲି । ତୁ ଆମ ବାଡ଼ି ଗଡ଼ିଆରେ ଅଛୁ ପରା ! ଅପେକ୍ଷା କର ! ସମୁଦ୍ରକୁ ଯିବା ପୂର୍ବରୁ ଆଗେ ସେଠୁ ମୁଁ ଦେଖିନେବି ତତେ !"

ତା'ର କିଛିଦିନ ପରେ ଶୀତଳ ଗୋଟାଏ ମୁଖା କିଣିଲା । ଏ ମୁଖାର ନାଁ "ସ୍ନର୍କେଲ" । ଏ ମୁଖା ଏମିତି ଯେ ଏହାକୁ ପିନ୍ଧିଲେ ଆଖିରେ ପାଣି ଲାଗେ ନାହିଁ । ତେଣୁ ମୁହଁ ବୁଡ଼େଇ ପାଣି ତଳକୁ ଚାହିଁହେବ । ଏଥିରେ ଛ' ଇଞ୍ଚ ଲମ୍ବର ପ୍ଲାଷ୍ଟିକ ନଳୀଟିଏ ଲାଗିଥାଏ । ଏ ନଳୀ ପାଣି ଉପରକୁ ଥାଏ । ତେଣୁ ମୁହଁ ବୁଡ଼େଇ ପାଣିତଳକୁ ଲକ୍ଷ୍ୟ କଲାବେଳେ ନିଃଶ୍ୱାସ ବି ନେଇହୁଏ ।

ଏ ମୁଖା ଲଗେଇ ଶୀତଳ ଗଲା ତାଙ୍କ ବାଡ଼ି ଗଡ଼ିଆକୁ । ଗଲାବେଳେ ହାତରେ ଗୋଟାଏ ବର୍ଛା ନେଇଗଲା । ପାଣିରେ ପହଁରି ପହଁରି ସେ ପାଣିତଳକୁ ଲକ୍ଷ୍ୟ କଲା ।

ଅସଂଖ୍ୟ ପ୍ରକାର ଦଳ ଭିତରେ ଅସଂଖ୍ୟ ପ୍ରକାର ମାଛ, ଶାମୁକା ଓ କଙ୍କଡ଼ାଙ୍କୁ ସେ ଦେଖିଲା । ଟିକିଏ ଦୂରରେ ସେ ଦେଖିଲା—ପଙ୍କ ଭିତରୁ ଗୋଟିଏ କଇଁଫଳ କଢ଼ ବାହାରି ଆସୁଥିଲା । କଇଁ ମୂଳରୁ ଗୋଟାଏ ଭୁଟି ଉଠୁଥିଲା । ବଚ୍ଛା ଆଗରେ ଶୀତଳ କଇଁମୂଳକୁ ଟିକିଏ ଉଖାରି ଦେଇ ଡାକିଲା—"ତୁ କିଏ ? ତମିମାଛ ଛୁଆ ?"





( ଦେଖ ! ଛୋ ଫେଟରେ ଏତେ କଥା ଅଛି )

ନା—ସେ ତମି ନୁହେଁ । ଶ୍ଲେଟ କଇଁଛ ଛୁଆଟିଏ ।

"ଓ । ମୋ ସାଙ୍ଗର ପୁଅ ତୁ ।" ଶୀତଳ ପାଟିକଲା । ପାଣି ଭିତରେ ତା ପାଟି କେମିତି କେମିତି ଶୁଭିଲା ।

କଇଁଛ ଛୁଆ ଭୁଟି ମାରି ମାରି ଉପରକୁ ଉଠିଲା ଆଉ ତାର ଶ୍ଲେଟ ସରୁ ବେକଟାକୁ ଲମ୍ବେଇ ଦେଇ ଶୀତଳର ମୁଖରେ ଟିକେ ବେକ ଘଷିଦେଇ ପହଁରି ଗ୍ଭଲିଗଲା ।

———

# ସେମାନେ ପାତାଳକୁ ଯାଇଥିଲେ

ପାତାଳକୁ ବାଟ କେଉଁଠି ?

ଆମ ଗାଁ ଆଡ଼େ ମହାତଳ ବୋଲି ଗୋଟିଏ ଗାଁ ଅଛି । ଶୁଣାଯାଏ କୁଆଡ଼େ ସେଇ ଗାଁର ରାଧୀ ଗଉଡ଼ୁଣୀ ବୋଲି ଗୋଟିଏ ବୁଢ଼ୀର ବାଡ଼ିଆଡ଼େ ବାଟ ଅଛି ପାତାଳକୁ । ତା କୂଅ ପାତାଳକୁ ପଶିଛି । ସବୁ ବର୍ଷ ବୈଶାଖ ପୂର୍ଣ୍ଣିମା ରାତିରେ ରାଧୀ ଗଉଡ଼ୁଣୀର ଏଇ କୂଅ ମୂଳେ ଗୋଟାଏ ବଡ଼ ଯାତ୍ରା ହୁଏ । ସେଦିନ ରାତି ତମାମ କୀର୍ତ୍ତନ ହୁଏ । ରାଧୀ ତାର ଚାରି ଦିନ ପୂର୍ବରୁ ଉପାସ କରିଥାଏ । ପୂର୍ଣ୍ଣିମା ଦିନ ରାତିରେ ରାଧୀ ମନ୍ତ୍ରପାଣିରେ ଗାଧୋଇ ପାଧୋଇ ଶୁଦ୍ଧପୂତ ହୋଇ କୂଅମୂଳକୁ ଯାଏ । ଧୂପ, ଦୀପ, ଫୁଲ, ଚନ୍ଦନ ସବୁ ଠିକ୍ଠାକ୍ ହୋଇଥାଏ । ଆକାଶରେ ଜହ୍ନ ଧୀରେ ଧୀରେ ଉଠୁଥାଏ ଉପରକୁ । ଜହ୍ନ ଉଠି ଉଠି ଯେତେବେଳେ ଠିକ୍ ମୁଣ୍ଡ ଉପରକୁ ଆସେ, ସେତିକିବେଳେ ହଠାତ୍ ସେଇ ଅନ୍ଧାରିଆ ଗହ୍ୱରିଆ କୂଅ ଭିତରଟା ଆଲୋକିତ ହୋଇଯାଏ । ହଠାତ୍ କୀର୍ତ୍ତନ ବଢ଼ିଉଠେ । ଝାଞ୍ଜ, ମୃଦଙ୍ଗ, ଖୋଳ, କରତାଳରେ ଚାରି ଦିଗ ଥର୍କିପଡ଼େ । କୂଅ ଭିତରକୁ ପୂଜା ନୈବେଦ୍ୟ ପକେଇଦେଇ ରାଧୀ ମୂର୍ଚ୍ଛା ହୋଇପଡ଼େ । ସେତିକିବେଳେ କୁଆଡ଼େ କୂଅ ଭିତରୁ ପାତାଳରୁ ଡାକ ଆସେ ରାଧୀ ପାଖକୁ । ପାତାଳରୁ ମଧ୍ୟ ଦଶ ଅବତାର ଗୀତ ଶୁଣାଯାଏ ସେତେବେଳେ । ଲୋକେ କହନ୍ତି ପୂର୍ବକାଳରେ ଯେତେବେଳେ ବିଷ୍ଣୁ ବାମନ ଅବତାର ଧରି ବଳୀକୁ ପାତାଳକୁ ଚାପି ଦେଇଥିଲେ, ଏଇ ଜାଗାରେ ବଳୀ ଦବି ଯାଇଥିଲା ପାତାଳକୁ । ବିଷ୍ଣୁଙ୍କ ପାଦରେ ଏଇ କୂଅ ସୃଷ୍ଟି ହୋଇଚି । ଏ କୂଅ ପୁଣି ଭାରି ପ୍ରତ୍ୟକ୍ଷ କୂଅ । ଏଠୁ ଭବିଷ୍ୟତ ବାଣୀ ଶୁଣାଯାଉଥିଲା ଆଗେ । ବିଭା, ବ୍ରତବେଳେ, ପିଲାଛୁଆ ବାଧିକା ପଡ଼ୁଥିଲାବେଳେ ଲୋକେ ଆସି ଏଇ କୂଅକୁ ପଚାରି ଦେଇଯାଆନ୍ତି । ମୋ ଝିଅ ବାହାଘର କେଉଁ ଦିଗରେ ଠିକ୍ କଲି ? ମୋ ପୁଅ ବ୍ରତ ବେଳକୁ ମେଘ ହେବ କି ? ଆମ କୁନି ପୁଅର ଜର କେବେ ଛାଡ଼ିବ ? ସବୁର ଠିକ୍ ଠିକ୍ ଉତ୍ତର କୁଆଡ଼େ ଲୋକେ ପାଉଥିଲେ । ଏବେ କଅଣ ହେଲା କେଜାଣି, ସେ ଶବ୍ଦ ଆଉ ଶୁଣାଯାଉ ନାହିଁ ।

ଆମେ ସେଦିନଯାକେ ଜାଣିଥାଉ ଯେ ସାରା ପୃଥିବୀରେ ପାତାଳପୁରକୁ ଗୋଟିଏ ବୋଲି ବାଟ ଅଛି । ସେଇଟି ହଉଚି ଏଇ ମହାତଳ ଗାଁର ରାଧୀ ଗଉଡ଼ୁଣୀ ବୁଢ଼ୀର ବାଡ଼ିଆଡ଼େ । ପାତାଳକୁ ସେଇଠି ଆମ ଗାଁ ପାଖରେ ବାଟ; ଅଥଚ ଆମ ଭିତରୁ କାହାରି

ସାହସ ହେଉ ନ ଥାଏ ଟିକେ ଯାଇ ପାତାଳ କେମିତିକା ଜାଗା ଦେଖି ଆସିବାକୁ । ଯାହା ବା କିଏ ଯାଆନ୍ତା, ତାକୁ ବୁଢ଼ୀ ବାଟ ଓଗାଳେ । ରଘୁ ସାଆନ୍ତର ମହାବଳିଷ୍ଠ ଲୋକ । ଦିନେ ସେ ବାହାରିଲେ ପାତାଳ ଦର୍ଶନ କରିବାକୁ । ହେଲେ ଗଧୀ ଗଉଡ଼ୁଣୀ ବୁଢ଼ୀ ତାକୁ ବି ବାଟଛାଡ଼ିଲା ନାହିଁ, କାଳେ କୂଅ ତାର ମାରି ହୋଇଯିବ ବୋଲି । ଏମିତି ଏମିତି ଥାଏ ।

ଦିନେ ଶୁଣାଗଲା, ଓ୍ୱେଲସ୍ ସାହେବ ବୋଲି ଆମେରିକା ନୌବାହିନୀର ଜଣେ ଅଫିସର କୁଆଡ଼ ପାତାଳ ପରିଭ୍ରମଣ କରି ଫେରି ଆସିଲେଣି । ଏ ଖବର ଶୁଣି ଆମେ ତାଟକା ! ଓ୍ୱେଲସ ସାହେବ ସେଣୁ କୁଆଡ଼ୁ ପାତାଳକୁ ଗଲେ ? ପାତାଳକୁ ଯିବା ରାସ୍ତା ତ ଏଣେ । ସେଠି ପୁଣି ବାଟ ଓଗାଳି ବୁଢ଼ୀ ଶୋଉଛି !




( ଆମେ ସେଦିନଯାକେ ଜାଣିଥାଉ ଯେ ···· )

ଆମେ ଦଉଡ଼ିଲୁ ବୁଢ଼ୀ ବାଡ଼ିକୁ । କାଳେ ଅବା ଓ୍ୱେଲସ୍ ସାହେବ ସେଇବାଟେ ପାତାଳକୁ ପଶିଥିବେ । ଇଏ ଆମ ଗାଁ ପାଖ କଥା, ଅଥଚ ଆମେ ଜାଣିନୁ ଏ କଥା ?

ଦେଖିଲୁ, ବୁଢ଼ୀ ସ୍ବଏଁ ବୁଢ଼ୀ ଶୋଇଛି । ପଚାରିଲୁ, "ହଇଲୋ ବୁଢ଼ୀ ! ଓ୍ୱେଲସ୍ ସାହେବ ଏଇ ବାଟେ ନା କୋଉବାଟେ ପାତାଳକୁ ଗଲେ !"

ବୁଢ଼ୀ ତ ଏକବାରେ ତାଟକା ।

"କୋଉ ଓଲସ କରେ ପୁଅ ?"—ବୁଢ଼ୀ ବଲବଲ କରି ଆମ ମୁହଁକୁ ଚାହିଁଲା ।

ବୁଢ଼ୀ ଆମ କଥାର ଉତ୍ତର ଦେଇ ପାରିବ ନାହିଁ ଜାଣି ଆମେ ଘରକୁ ଫେରି ଆସିଲୁ ।

ତା ପରଦିନ ପରେ ସବୁ ଖବର ବାହାରି ପଡ଼ିଲା । ସେଇ ଦିନଠୁଁ ଆମେ ଜାଣିଲୁ ଯେ ପାତାଳକୁ ବାଟ ଖାଲି ଆମ ଗାଁ ଠେଇ ନାହିଁ, ବାଟ ଅଛି ଆଉ ଠାଏ ବି ।

ଗୁଆମ୍ ଦ୍ୱୀପ ? ସେଇଟା କୋଉଠି ? ଖୋଜା ହେଲା ମାନଚିତ୍ରରେ । ଦେଖାଗଲା, ଉତ୍ତରରେ ଅକ୍ଷାଂଶ ପ୍ରାୟ ୧୩ ଡିଗ୍ରୀ ଆଉ ପୂର୍ବକୁ ଦ୍ରାଘିମା ୧୪୦ ଠେଇଁ ସତକୁ ସତ ବିନ୍ଦୁ ଭଳିଆ ଗୋଟାଏ ଦ୍ୱୀପ ଅଛି ମାନଚିତ୍ରରେ । ସେଇଟା ପଡ଼ୁଛି ପ୍ରଶାନ୍ତ ମହାସାଗରର ସେଇ ପାଖାପାଖି—କୁଆଡ଼େ ଏମିତି ଏକ ସ୍ଥାନ ଯୋଉଠି ସମୁଦ୍ର ଏକବାରେ ପାତାଳକୁ ଫୁଟିଛି । ଏକଥା ବହୁତ ଆଗରୁ ଲୋକେ ଜାଣିଥିଲେ । ହେଲେ, ପାତାଳକୁ ଯିବା ପାଇଁ ଦମ୍ କାହିଁ ? ମଣିଷ ପକ୍ଷରେ ସ୍ୱର୍ଗକୁ ଯିବା ଯେତିକି କଷ୍ଟ, ପାତାଳକୁ ଯିବା ତାଠୁଁ କିଛି କମ୍ କଷ୍ଟ ନୁହେଁ । ହେଲେ ମଣିଷ ଛାଡ଼ୁଚି କେତେବେଳେ ?



( ପାଣି ଭିତରକୁ ତାଙ୍କୁ ପସେଇ ଦିଆଗଲା )

ବଡ଼ ବଡ଼ ବୁଡ଼ାଳିମାନଙ୍କୁ ପଚରାଗଲା—ହଇଓ ! ତୁମେମାନେ ତ ଏତେ ବୁଡ଼ୁଚ, ସମୁଦ୍ରରେ ବୁଡ଼ି ମଣି ମୁକ୍ତା ଆଣୁଚ ସମୁଦ୍ର ତଳୁ । ଜାହାଜ ତଳେ ବୁଡ଼ି ଜାହାଜ ମରାମତି କରୁଚ । ଆଚ୍ଛା ଗଲ ଆମ ଏଇ ଗୁଆମ୍ ଦ୍ୱୀପ ପାଖରେ ବୁଡ଼ି ଦେଖିବ । ସତରେ କଣ ସେଠି ସମୁଦ୍ର ପାତାଳକୁ ଫୁଟିଛି ? ଆଚ୍ଛା, ଯଦି ଫୁଟିଛି, ତା ହେଲେ ଦେଖ ତ ପାତାଳ କେମିତିକିଆ ଜାଗା ।

## —ଏକୋଇଶ—

ବଡ଼ ବଡ଼ ବୁଡ଼ାଳିମାନେ ଗଲେ । ପାଣି ତଳେ ନିଶ୍ୱାସ ମାରିବା ପାଇଁ ଯେମିତି ବୁଡ଼ାଳି-ପୋଷାକ ପିନ୍ଧନ୍ତି, ସେମିତି ପିନ୍ଧିଲେ । ତାଙ୍କ ଅଣ୍ଟାରେ ଦଉଡ଼ି ସବୁ ବନ୍ଧା ହେଲା । ଜାହାଜ ଉପରୁ ପାଣି ଭିତରକୁ ତାଙ୍କୁ ଖସେଇ ଦିଆଗଲା । ସେମାନେ ବୁଡ଼ିଲେ । ବୁଡ଼ିଲେ ସିନା କିନ୍ତୁ କିଛି ବାଟ ଯାଇଛନ୍ତି କି ନାହିଁ, ହଠାତ୍ ଦଉଡ଼ି ହଲି ଉଠିଲା । ସାଙ୍ଗେ ସାଙ୍ଗେ ତାଙ୍କୁ ଟେକା ହେଲା ଉପରକୁ । ବୁଡ଼ାଳିମାନଙ୍କୁ ପାଣି ଭିତରୁ ବାହାର କଲାବେଳେ ଦେଖାଗଲା ସେମାନଙ୍କ ଭିତରୁ କେତେକଙ୍କର ହୋସ୍ ଯିବା ଉପରେ ।

ତାଙ୍କୁ ଆଗ ସାଷ୍ଟମ କରାଗଲା । ତା'ପରେ ପଚରାଗଲା । ସେମାନେ ସମସ୍ତେ ସେଇ ଗୋଟିଏ କଥା କହିଲେ । ସେମାନେ କହିଲେ, "ଦେଖ ବାବୁ, ପାଣିରେ ବୁଡ଼ିବା କିଛି ନୂଆ କଥା ଆମର ନୁହେଁ । ଆମେ ହେଲୁ ପାଣିକୁଆ । ସମୁଦ୍ରରେ ବୁଡ଼ି ସାତତାଳ ପାଣିରେ ଆମେ ବୁଲିଛୁ । ବହୁତ ବହୁତ କଥାମାନ ଦେଖିଛୁ ଆମେ । ହେଲେ ଏଠି ବୁଡ଼ିବା ହେବ ନାହିଁ ବାବୁ ଆମଦ୍ୱାରା । ଓହୋ ! ବାପରେ ବାପ ! କି ଅନ୍ଧାର ! ଅଉ ଅନ୍ଧାର ତ ଅନ୍ଧାର ! ପାଣି ପୁଣି ଏମିତି ଜୋର୍‌ରେ ଚାପିଦିଏ । ଅଉ ଟିକିଏ ତ ରକ୍ତବାନ୍ତି ହୋଇଥାନ୍ତା ଆମର । ସତେକି କିଏ ପଥର ସନ୍ଧିରେ ପୂରେଇ ଆମକୁ ପେଷି ଦଉଥିଲା । ଆମ କାନମୁଣ୍ଡ ଝାଇଁ ଝାଇଁ ମାରିଗଲା । ଯୋଗକୁ ଦଉଡ଼ିଟା କେମିତି ହଲିଗଲା । ଆମେ ଟେକା ହୋଇ ଆସିଲୁ ଉପରକୁ । ନଇଲେ ତ ଆମେ ସଆଡ଼େ ଶେଷ ।"

ସେମାନଙ୍କ କଥାରୁ ଜଣାଗଲା ଯେ ଖାଲି ବୁଡ଼ାଳି ପୋଷାକ ପିନ୍ଧି ମଣିଷ ସେଠି ବୁଡ଼ି ପାରିବ ନାହିଁ । ସେଠି ବୁଡ଼ିବା ପାଇଁ ଯନ୍ତ୍ର ଦରକାର । ଯୋଉ ଯନ୍ତ୍ରରେ ପଶିକରି ଗଲେ ପାଣିର ଚାପ ମଣିଷ ଦେହରେ ପଡ଼ିବ ନାହିଁ । ନଚେତ୍ ପାଣିର ସେତେ ତଳେ ଏତେ ଜୋର୍ ଚାପା ପଡ଼ିବ ମଣିଷ ଦେହ ଉପରେ ଯେ, ସତକୁ ସତ ବୁଡ଼ାଳିଙ୍କ କହିବାଭଳି ରକ୍ତବାନ୍ତି ହେଇଯିବ । ଖାଲି ସେତିକି ନୁହେଁ, ରକ୍ତ ତ ଯିବ ଯିବ, ମଣିଷ ଦେହ ଖୋଳପାଟା ବି ଚଟଣି ହୋଇଯିବ ସେ ଚାପରେ ।

କିନ୍ତୁ ଆଶ୍ଚର୍ଯ୍ୟ କଥା : ଏଥି ଭିତରେ ସବୁ ବିପଦ ପାଇଁ ପ୍ରସ୍ତୁତ ହୋଇ ଓ୍ୱେଲ୍ସ ସାହେବ ବାହାରି ପଡ଼ିଥିଲେ ପାତାଳ ପର୍ଯ୍ୟଟନ ଉଦ୍ଦେଶ୍ୟରେ । ସେ ଏକା ଯାଇ ନ ଥିଲେ । ତାଙ୍କ ସଙ୍ଗେ ଆଉ ଜଣେ ସାହେବ, ତାଙ୍କ ନାଁ ପିକାର୍ଡ଼ ସାହେବ—ସେ ବି ଯାଇଥିଲେ । ସେମାନେ ଯେଉଁ ବୁଡ଼ାଜାହାଜ ଭଳି ଜିନିଷରେ ଗଲେ, ତା ନାଁ ହେଉଛି 'ଟ୍ରିସି' । ଜାହାଜ ତଳେ ଗୋଟାଏ ଲୁହାର ବେଲୁନ ଭଳି ଜିନିଷରେ ସାହେବ ଦିଜଣ ବସିଲେ । ତା ପରେ ଜାହାଜ ଭିତରକୁ ଧୀରେ ଧୀରେ ପାଣି ପଶିଗଲା । 'ଟ୍ରିସି' ବୁଡ଼ିଲା, ଟ୍ରିସି ଚାଲିଲା ପାତାଳ ପଥେ ।

ତିନିଶହ ଫୁଟ—ଚାରିଶହ ଫୁଟ—ପାଞ୍ଚଶହ ଫୁଟ—ଛଅ ଶହ—ଧୀରେ ଧୀରେ ଘନେଇ ଆସିଲା ଅନ୍ଧାର। ହଠାତ୍ ଜଳିଉଠିଲା ଆଲୁଅ ଟ୍ରିସି ଦେହରୁ । ଝରକା ବାଟରେ ସାହେବ ଦିଜଣ ଚାହିଁଲେ। ଟ୍ରିସି ଖସୁଚି । ଧୀରେ ଧୀରେ ଟ୍ରିସି ଖସି ପଡ଼ୁଚି ପାତାଳ ଆଡ଼କୁ । ବଢ଼ିଚାଲିଚି ଗଭୀରତା ।

ସାତଶ, ଆଠଶ, ନଅଶ, ହଜାରେ ଫୁଟ । ଘିଉ ଅନ୍ଧାର : ଓଃ, ଦେହହାତ କାଳୁଆ ମାରିଯାଉଛି । ସାହେବ ଦିଜଣ ଗରମ ଲୁଗା ବଦଳେଇଲେ ।

ହଜାରେ, ଦିହଜାର, ତିନି, ଚାରି, ପାଞ୍ଚ ପନ୍ଦର ହଜାର ଫୁଟ ! ହାଲୋ ! ହାଲୋ ! ନାଃ, ଆଉ ଟେଲିଫୋନ୍ କାମ କରୁନାହିଁ । ଉପରେ ପ୍ରଶାନ୍ତ ମହାସାଗରର ପାଣିରେ ଭାସୁଥିଲା "ଓ୍ୟାନ୍‌ଡ଼ାଙ୍କ" ଜାହାଜ। ଏଇ ଜାହାଜରୁ ଟ୍ରିସିକୁ ବାହାର କରି ପାତାଳକୁ ପଠା ହେଇଥିଲା । ଓ୍ୟାନ୍‌ଡ଼ାଙ୍କର ଲୋକେ ପାଣି ତଳର ସାହେବ ଦିଜଣଙ୍କ କଥା ଆଉ ଶୁଣି ପାରୁ ନ ଥିଲେ । ସେମାନେ ବିଚଳିତ ହୋଇ ଉଠିଲେ; ଟ୍ରିସି କିନ୍ତୁ ଖସି ଖସି ଯାଉଥିଲା। ସେକେଣ୍ଡକୁ ଫୁଟେ ଫୁଟେ କରି ଗଭୀରକୁ ସେ ଖସିପଡ଼ୁଥିଲା ।

ଅଠର ହଜାର—ଉଣେଇଶି—କୋଡ଼ିଏ—ହେଇ ଚବିଶି ହଜାର ଫୁଟ ହେଲା !

ଓ୍ୱେଲ୍‌ସ ସାହେବ ଡାକିଲେ ପିକାର୍ଡ୍ ସାହେବଙ୍କୁ ଏଇଠି । ଦୁହେଁ ଚାହାଁଚାହିଁ ହେଲେ ଆଉ ହସିଲେ। ବୁଡ଼ାଳି ରେକର୍ଡ୍ ଟପିଲେ ସେମାନେ ଏଇଠି ଏଇ ଚବିଶି ହଜାର ଫୁଟଠେଇଁ । ସ୍ୱା ତଳକୁ ଆଉ କେବେ କୋଉ ଲୋକ ବୁଡ଼ି ନ ଥିଲା ।

ତିରିଶି ହଜାର ଫୁଟ !—ହଠାତ୍ କଅଣଟାଏ ଫୁଟିଲା। ଟ୍ରିସି ଥରି ଉଠିଲା ।

ସାହେବ ଦିହେଁ ପୁଣି ଚାହାଁଚାହିଁ ହେଲେ । ଏଥର ଆଉ ତାଙ୍କ ମୁହଁରେ ହସ ନ ଥିଲା। ଭୟରେ ଦିହିଁଙ୍କ ପାଟିରୁ କଥା ବାହାରୁ ନ ଥିଲା । ଏ କି ଶବ୍ଦ ହେଲା ? କଅଣ ଫାଟିଲା ? କୋଉଠି ? କିଛି ନାହିଁ ତ !

ଟ୍ରିସିର ସେ ଆଡ଼କୁ କିନ୍ତୁ କାନ ନାହିଁ । ସେ ନିର୍ବିକାର ହୋଇ ଓହ୍ଲେଇ ଯାଉଥିଲା ପାତାଳ ଆଡ଼କୁ ।

ପଇଁତିରିଶ ହଜାର ଆଠଶ ଫୁଟ : ହଠାତ୍ "ଟ୍ରିସି" ରହିଗଲା । ଉଠିଲା ଭୁସୁକିନା ଧୂଆଁ ଳିଆ କଅଣ ଗୋଟାଏ ଜିନିଷ ।

ପାତାଳ ? ପାତାଳ ହୋଇଗଲା କି ? —ସାହେବ ଦି' ଜଣ ଚମକି ପଡ଼ିଲେ ।

"ହଁ ପାତାଳ !"—ଦିହେଁ ପୁଣି ହସି ଉଠିଲେ । ସମୁଦ୍ର ତଳର ପଙ୍କ ଖୁବ୍ ଜୋରରେ ଚହଲି ପଡ଼ିଲା ଟ୍ରିସିର ଧକ୍‌କାରେ । ଧୂଆଁ ଭଳି ସେଗୁଡ଼ାକ ଖେଳି ବୁଲୁଥିଲା ଟ୍ରିସିର ଚାରିପାଖେ । ଚକ ଚକ କରି ଟ୍ରିସି ଦେହର ଆଲୁଅ ଖେଳିଯାଉଥିଲା ପାତାଳର

ସ୍ଥିତରେ । ଆଶ୍ଚର୍ଯ୍ୟ ହୋଇ ସାହେବ ଦୁ' ଜଣ ନିଜ ନିଜ ଝରକାରୁ ଲକ୍ଷ୍ୟ କରୁଥିଲେ ପାତାଳର ଅନ୍ଧକାରକୁ । ପାତାଳବାସୀମାନେ ଗଲେ କୁଆଡ଼େ ? ସାହେବ ଦୁହେଁ ପୁଣି ହସିଲେ । ଏତେ ତଳେ, ଏ ଅନ୍ଧାର, ଥଣ୍ଡା ଆଉ ଭୟଙ୍କର ଚୁପ ଭିତରେ କି କୌଣସି ଜୀବ ରହିପାରେ ?

ଠିକ୍ ସେତିକିବେଳେ ସେମାନଙ୍କ ଆଖି ଆଗରେ, "ଟ୍ରିସି"ର ଆଲୁଅ ଭିତରେ ସେମାନେ ଦେଖିଲେ ଗୋଟିଏ ଅଦ୍ଭୁତ ଜୀବ ! ଗୋଟିଏ ମୀନ !ମାତ୍ର ଇଞ୍ଚେ ଲମ୍ବର କୁନିମାଛଟିଏ ଖେଳି ଖେଳି ଚାଲିଯାଉଥିଲା ଆଲୁଅରୁ ଅନ୍ଧାର ଆଡ଼କୁ । ଛୋଟ ମୀନଟିଏ ।



( ଉପରେ ଓ୍ୟାନଡ଼ାଙ୍କ ଆଉ ତଳେ···ଟ୍ରିସି ଚାଲିଛି ଖସି )

ତା ହୃତ୍ପିଣ୍ଡ ଫାଟୁ ନ ଥାଏ । ତାର ରକ୍ତବାନ୍ତି ହେଉ ନ ଥାଏ । ଶୀତରେ ତାର ରକ୍ତ ପାଣି ଫାଟୁ ନଥାଏ । ମହାଆନନ୍ଦରେ ଖେଳିବୁଲି ସେ ଅନ୍ଧାର ଆଡ଼କୁ ହିଁ ମୁହେଁଇ ଥାଏ । ତାକୁ ବୋଧେ ଟ୍ରିସିର ଆଲୁଅ ଭଲ ଲାଗୁ ନ ଥାଏ ।

"ମୀନ ଶରୀର !"—ସାହେବମାନେ ଦଶ ଅବତାର ପଢ଼ିଥିଲେ ନିଶ୍ଚୟ୍ଯ ସେଇ ମାଛକୁ ଭଗବାନଙ୍କର ଅବତାର ଭାବି ପୂଜା କରିଥାନ୍ତେ ।

—ଚବିଶ—

କିନ୍ତୁ ପୂଜା କରିବା ପାଇଁ ବେଳ ଆଉ ନ ଥିଲା ।

ଛତିଶ ହଜାର ଫୁଟ, ପ୍ରାୟ ସାତମାଇଲ ଗଭୀର ପାଣି ତଳେ ହଠାତ୍ ପିକାର୍ଡ଼ ସାହେବ ଚିତ୍କାର କରି ଉଠିଲେ "ଓ୍ୱେଲସ୍ !" ଓ୍ୱେଲସ୍ ସାହେବଙ୍କ ଛାତି ଦାଉଁଦାଉଁ ପଡ଼ିଲା । ହଠାତ୍ ତାଙ୍କର ମନେ ପଡ଼ିଲା ତିରିଶ ହଜାର ଫୁଟ ଠେଇଁ ସେଇ ଯେଉଁ ଭୟଙ୍କର ଶବ୍ଦଟା ସେମାନେ ଶୁଣିଥିଲେ । ସେମାନେ ଦେଖିଲେ ଯେ ଟ୍ରିସ୍ଟିର ଗୋଟାଏ ଝରକା ପରଦା ଫାଟି ଆଁ କରିଥିଲା । ପାଣିର ଭୟଙ୍କର ଚାପ ସମ୍ଭାଳି ନ ପାରି ସେଇ କଠିନ ଧାତୁର ପରଦାଟା କେତେବେଳୁ ଫାଟିଗଲାଣି —ତିରିଶ ହଜାର ଫୁଟ ଠେଇଁ । ବର୍ତ୍ତମାନ ସେମାନେ ଥିଲେ ଛତିଶ ହଜାର ଫୁଟ ତଳେ ।

ସାଙ୍ଗେ ସାଙ୍ଗେ ପାତାଳ ଦର୍ଶନ ଶେଷ କରି ସାହେବ ଦୁହେଁ ଟ୍ରିସ୍ଟିକୁ ବାଗେଇଲେ ପୁଣି ମର୍ତ୍ତ୍ୟଲୋକକୁ । ଟ୍ରିସ୍ଟି ଉପରକୁ ଉଠିଲାବେଳକୁ ଦିନ ରତି ରତି ହେଉଥିଲା । ପଶ୍ଚିମ ଆକାଶ ରଙ୍ଗରେ ଫାଟି ପଡ଼ୁଥିଲା । ପାତାଳର କଟି କଟି ଅନ୍ଧାର ଭିତରୁ ଫେରି ଆସିଲା ପରେ ବୁଡ଼ାଳିମାନଙ୍କୁ ଆକାଶର ଏଇ ରଙ୍ଗ ଖୁବ ଭଲ ଲାଗିଲା । ତଥାପି ସେମାନେ ପୁଣି ଆଉଦିନେ ପାତାଳକୁ ଯିବାପାଇଁ ଠିକ୍ କଲେ ।

---

# ବୋଇତ ଡାକ ଘେନ ଆସିଲା

“ମୁଁ ଜାହାଜ ମେଲିଲି । ବଞ୍ଚିଥିଲେ ଆର ସନକୁ ଭେଟାଭେଟି । ନାହିଁ ଯଦି ମୁ ନ ଫେରେ, ତା ହେଲେ ନୀଳାଚଳ ଠେଇଁ ଡାକିଲେ ମୁଁ ଓ କରିବି ।”

ସେଇ ଦିନଠୁଁ ଦୁଇ ହଜାର ବର୍ଷ ବିତିଗଲାଣି । ଅଚ୍ୟୁତ ମାଝି ଆଉ ଫେରିଲା ନାହିଁ । ତା ଜାହାଜର ଖଣ୍ଡ ବି ମିଳିଲା ନାହିଁ ।

ଅଚ୍ୟୁତ ମାଝି କିଏ କହିଲେ ଏଇଲେ ଲୋକେ ଚିହ୍ନିବେ ନାହିଁ । କିନ୍ତୁ ବାଲେଶ୍ୱରରେ ଗୋଟିଏ ମାଝିଘର ଅଛି । ଏଇ ମାଝିଘରେ ଗୋଟିଏ ପ୍ରଥା ଅଛି । ସେମାନେ ପ୍ରତିବର୍ଷ ରଥଯାତ୍ରାକୁ ପୁରୀ ଆସନ୍ତି । ଜଗନ୍ନାଥ ଦର୍ଶନ ସାରି ସେମାନେ ପିଲାଛୁଆ ନେଇ




ମହୋଦଧି କୂଳକୁ ଯାଆନ୍ତି । ସେଇଠି ଠିଆ ହୋଇ ଏଇ ମାଝିଘରର ସବୁଠୁଁ ବଡ଼ ପିଲାଟି ଡାକ ପକାଏ—

“ବାଆ ! ବାଆ ଲୋ ! ହେ ବାଆ ! ଆ ଆ ଫେରିଆ, ଫେରିଆ !”

ଡାକ ଦେଇସାରି ପିଲ୍ଟି ଅନେକବେଳ ଅପେକ୍ଷା କରେ । ସତେ କି ତା ଡାକ ଦରିଆ ଆରପାରିକୁ ଚାଲିଯାଏ । କିନ୍ତୁ ଡାକ ଆଉ ଫେରେ ନାହିଁ । ଅଚ୍ୟୁତ ମାଝି ଓ ବୋଲି ଜବାବ ଦିଏ ନାହିଁ । ସମୁଦ୍ର ଖାଲି ଗର୍ଜିଉଠେ—

ଉଉଉଉଉ..........।

ପିଲ୍ଟିକୁ ନେଇ ଘରଲୋକେ ଘରକୁ ଫେରନ୍ତି ।

ସେଇ ମାଝିଘରେ ଏମିତି କେତେପୁରୁଷ ଧରି ଏମିତି ଗୋଟିଏ ପ୍ରଥା ଚାଲି ଆସିଛି । ପିଲାଏ ଆସି ସମୁଦ୍ର କୂଳରେ ବଡ଼ବଡ଼ଙ୍କୁ ଡାକନ୍ତି । ଆମେ ଯେମିତି କାର୍ତ୍ତିକ ଅମାବାସ୍ୟା ଦିନ ଡାକୁ ସେମିତି । କିନ୍ତୁ ସେ କାଳର କଳିଙ୍ଗ ଦେଶର ଅଚ୍ୟୁତ ମାଝି ଆଉ କ'ଣ ବଞ୍ଚିଛି ଯେ ପିଲାଙ୍କ ଡାକର ଜବାବ ଦେବ ? ତା ମରିବା ତ ଆଜିକୁ ଦି ହଜାର ବର୍ଷ ହେଇଗଲା ।

ରାଜୀବଲୋଚନ ମାଝି ସେଇ ବଂଶର ପିଲା । ସେଦିନ ପୁରୀ ସମୁଦ୍ରକୂଳକୁ ଯାଇ ରାଜୀବ ଡାକିଲା—

"ବାପା ! ବାପା ! ତୁମେ କୋଉଠି ଅଛ ବାପା ?"

ରାଜୀବର ବାପା ଅଳ୍ପଦିନ ତଳେ ସମୁଦ୍ରରେ ବୁଡ଼ି ମରିଥିଲେ । ସେଦିନ ବାଲେଶ୍ୱରରୁ ଯୋଉ ଧାନ ବୋଝେଇ ଡଙ୍ଗା କଲିକତା ଯାଉ ଯାଉ ବାଟରେ ବୁଡ଼ିଗଲା, ରାଜୀବର ବାପା ସେଇ ଡଙ୍ଗାରେ ଯାଉଥିଲେ । ହୁଗୁଳୀ ମୁହାଣର ଟିକିଏ ପୂର୍ବରୁ ଗୋଟାଏ ଝଡ଼ ଉଠିଲା । ସେ ଝଡ଼ରେ ଡଙ୍ଗା ଓଲଟି ପଡ଼ିଲା । ଡଙ୍ଗାରେ ଯେତେ ଲୋକ ଥିଲେ, ସମସ୍ତେ ବୁଡ଼ିମଲେ ।

ରାଜୀବ ସମୁଦ୍ର ପାଣିକୁ ଅନେଇ ରହିଲା । ସମୁଦ୍ର ପାଣି ଘୁ ଘୁ ହେଇ ମାଡ଼ି ଆସି ତା ପାଦ ଛୁଇଁଲା । ରାଜୀବର ଦିହ ଶୀତେଇ ଉଠିଲା । ସତେ କି ଗୋଟାଏ ଚିହ୍ନାହାତ ଆସି ତା ପାଦରେ ବାଜିଗଲା ।

ନଇଁପଡ଼ି, ହାତରେ ଚଳେ ପାଣି ଆଣି ରାଜୀବ କହିଲା—

"ରେ ସମୁଦ୍ର ! ତୁ ମୋ ବାପାଙ୍କୁ ଦେଖିଛୁ କି ?"

ସମୁଦ୍ରକୁ ସତେ କି ହସ ଲାଗିଲା—

ହୋ, ହୋ, ହୋ......ସମୁଦ୍ର ହସିଦେଲା ।

ସମୁଦ୍ରର ଥଟ୍ଟାରେ ରାଜୀବର ମୁହଁ ରଙ୍ଗା ପଡ଼ିଗଲା । ସେ ଘରକୁ ଫେରିଲା । ଚୁପ୍ ଚୁପ୍ ହେଇ ମନେ ମନେ କେତେ କ'ଣ ଭାବିଲା ସେ । ଏଥିମଧ୍ୟରେ ଅନେକ ଦିନ ବିତିଗଲା । ରାଜୀବ ସେତେବେଳେ କଲେଜରେ ପଢୁଥାଏ । ମଝିରେ ମଝିରେ ପୁରୀ ଆସି ସମୁଦ୍ରକୁ ଦେଖି ଯାଉଥାଏ । ସେଦିନର ସମୁଦ୍ରର ଥଟ୍ଟା କଥା କିନ୍ତୁ ସେ ମନରୁ ପାସୋରି ପାରୁ ନ ଥାଏ ।

ସେ ଜାଣିଥାଏ, ଦିନେ ନା ଦିନେ ସେ ଏ ସମୁଦ୍ରକୁ ସାଧି କରିବ ଓ ଗୋସବାପ, ବାପାଙ୍କର ଇଚ୍ଛାକୁ ଫେରେଇ ଆଣିବ ।

କିନ୍ତୁ ଏଥି ଭିତରେ ଅନେକ କଥା ଘଟିଗଲା । ରାଜୀବର ଜମିବାଡ଼ି ନିଲମ ହେଇଗଲା । ସେ ଗରିବ ହେଇଗଲା । ଆଉ ଉଚକୁ ପଢ଼ିପାରିଲା ନାହିଁ । ଚାକିରି ନ ପାଇ ରାଜୀବ ଗାଁରେ ଯାଇ ବସିଲା ।

ଖରାଦିନ । ତାଙ୍କ ଗାଁ ପାଖ ବୁଢ଼ାବଳଙ୍ଗ ନଈ ମୁହାଣ ପାଖକୁ ଯାଇ ରାଜୀବ ସମୁଦ୍ରକୁ ଚାହିଁଲା । ତା'ପରେ ତା'ର କଅଣ ମନ ହେଲା କେଜାଣି, ସେ ଗାଁକୁ ଫେରିଲା । ବଢ଼େଇବୁଢ଼ା ବରୁଣ ମହାରଣାକୁ ଯାଇ ରାଜୀବ ଚୁପ୍ ଚୁପ୍ କରି କ'ଣ କହିଲା । ଦୁହେଁ ମିଶି କିଛିଦିନ ଭିତରେ ଗୋଟାଏ ବାଉଁଶ ଭେଲା କରି ଥୋଇଦେଲେ । ବରୁଣ ମହାରଣା ଭେଲା ଉପରେ ଗୋଟାଏ ସଳଖ ବାଉଁଶ ବାନ୍ଧିଦେଲା ଓ କହିଲା "ଏଥର ତୋ କରମ ।"



(ବୋତଲ ତାକ ଖେନି ଆସିଲା.........)

ଆଷାଢ଼ ପୂର୍ଣ୍ଣିମୀ । ଜହ୍ନ ଚକଚକ ପଡ଼ୁଚି । ମେଘ ଉଡେଇ ଥାଏ । ବର୍ଷିବ କି ନ ବର୍ଷିବ ! ଲୁଚି ଲୁଚି ରାଜୀବ ବାହାରି ପଡ଼ିଲା । ଭେଲା ଉପରେ ପାଦ ଦେଇ ରାଜୀବ ଗାଁ ଆଡ଼କୁ ଚାହିଁ ଜୁହାର ହେଲା । ସତେ କି ସେ ତା ଗୋସବାପ ଭଳି ଜନ୍ମଭୁଇଁଠୁ ମେଲାଣି ମାଗିନେଲା ।

ହଠାତ୍ ଗୋଟାଏ ପଶ୍ଚିମା ପବନ ଧରିନେଲା । ବାଉଁଶ ଭେଲାର ପାଲ ପ୍ରୁଲି ଉଠିଲା । ଭେଲା ସମୁଦ୍ର ଭିତରକୁ ଆଗେଇ ଗଲା । କିଛି ସମୟ ପରେ ରାଜୀବ ଦେଖିଲା

ତା ଆଗପଟୁ ଗୋଟାଏ ଲାଲ ପେଣ୍ଟ ସମୁଦ୍ରରୁ ଉଠି ଆସୁଚ । ସେ ଜାଣିଲା ତା ଭେଲା ପୂର୍ବଦିଗକୁ ଚାଲିଛି । ସେଇ ଦିଗରେ ଅଛି ଜାଭା ଆଉ ସୁମାତ୍ରା ଦ୍ୱୀପ । ଏଇ ଦ୍ୱୀପରେ ତାର ପୂର୍ବପୁରୁଷମାନେ ବେପାର ବଣିଜ କରି ଧନୀ ହୋଇଥିଲେ ।

କିନ୍ତୁ ସେଇ ଦିନଠୁଁ ଆଉ କେହି ରାଜୀବଲୋଚନ ମାଝିକୁ ଦେଖିନାହାଁନ୍ତି ।

ବହୁଦିନ ପରେ ପୁରୀ ସମୁଦ୍ର କୂଳରେ ଗୋଟିଏ କାଚ ବୋତଲ ଭାସୁଥିବାର ଦେଖି କେତେକ କଲେଜ ପିଲା ସମୁଦ୍ରରେ ପଶି ବୋତଲଟିକୁ ଆଣିଲେ । ବୋତଲଟିକୁ ଫିଟେଇବାରୁ ଗୋଟିଏ ଚିଠି ମିଳିଲା । ସେ ଚିଠିରେ ଲେଖାଥିଲା—



(ମୁଁ ସମୁଦ୍ରକୁ ଜୟ କରିଛି ଆଜ କରିବ ମଧ୍ୟ······)

"ବହୁତ ଦୂରରେ ଚଢ଼େଇଟିଏ ଉଡ଼ୁଚ ! ବୋଧହୁଏ ସ୍ଥଳଭାଗ ! ନକ୍ସା ଦେଖି ମନେ ହେଉଛି—ବର୍ମା ଉପକୂଳ ଆଉ ଅଳ୍ପ ଦୂର ! ଦୂରରୁ ଲହଡ଼ି ଦେଖାଯାଉଛି ! କିନ୍ତୁ କ'ଣ ହେବ ? ଶୋଷରେ ତୋଟି ଶୁଖିଯାଉଛି ! ତିନ ଦିନ ହେବ ପାଣି ଶେଷ—

ତେବେ ମୁଁ ଖୁବ୍ ଖୁସି । ଯୋଉ ପବନ ବି ହଜାର ବର୍ଷ ତଳେ ମୋ ଗୋସବାପାଙ୍କ ପାଲକୁ ଠେଲୁଥିଲା, ସେଇ ପବନ ମତେ ସାହାଯ୍ୟ କରୁଛି । କିନ୍ତୁ ପାଣି ମତେ ଡରେଉଚ । ତଥାପି ମୁଁ ସମୁଦ୍ରକୁ ଜୟ କରିଛି । ଯାହାକୁ ଅନ୍ୟମାନେ ଜାହାଜରେ ପାରି ହେଉଥିଲେ, ତାକୁ ଆଜ ମୁଁ ବାଉଁଶ ଭେଲାରେ ସାଧି କରିଛି । ବୋତଲକୁ ଡାକବାଲା କରି ଏ ଚିଠି ପଠାଉଛି । ଏ ଚିଠି ଯେ ପାଇବ, ସେ ମୋ ଦେଶବାସୀଙ୍କ ଜଣାଇଦେବ—ରାଜୀବ ।"

———




## ଅତିଥି ହେଲା

ରାତି ଦୁଇଟା ବେଳ । ଆସିଲା ସୁ-ସୁ ହୋଇ ପବନ ଆଉ ବର୍ଷା । ସେଇଟା ହେଉଛି ବର୍ଷର ପହିଲି ପିଢ଼ାପାଣିଆ ବର୍ଷା । ସକାଳକୁ ବର୍ଷା ଛାଡ଼ି ଯାଇଥିଲା । ନିର୍ମଳ ହୋଇ ସୂର୍ଯ୍ୟ କିରଣ ପଡ଼ି ଯାଇଥିଲା । ଠପ୍ ଠପ୍ ହୋଇ ଚାଳରୁ ଗଳି ପଡ଼ୁଥାଏ ଟୋପାଏ ଟୋପାଏ ପାଣି ।

ଆମେ ତାକୁ ପ୍ରଥମ କରି ଦେଖିଲୁ ଓଳିତଳେ । ସେ ବର୍ଷର ପ୍ରଥମ ଜିଆ ସେ । ମୁହଁ ଲହଲହ କରି, ନାକ ବଢ଼େଇ କଅଣ ଶୁଙ୍ଘିଲା ଭଳି ସେ ଉପରକୁ ଚାହୁଁଥାଏ । ଚାଳର ବର୍ଷାପାଣି ଟୋପାଟା ଥପ୍ କରି ଯେମିତି ତା ମୁହଁ ଉପରେ ପଡ଼ିଯାଏ, ସେ କଲବଲ ହୋଇ ଘରର ପାହାଚ ଆଡ଼କୁ ମୁହାଁଏ । ଏମିତି ଏମିତି ହୋଇ ସେ ପହଞ୍ଚିଲା ଆମ ଘର ଦୁଆର ମୁହଁରେ । ସେ ଦିନ ସେ ଆମର ଅତିଥି ହେଲା ।

## ନାଁ ଦିଆଗଲା "ହଳଧର"

ଏଡ଼େ ମୋଟା, ଛ ଇଞ୍ଚ ଲମ୍ବ, ନାକୁଆ, ଟୋଲକା ଜିଆଟାଏ । ତା ନାଁ ଆମେ ଦେଲୁ "ହଳଧର" । ମାଟି ଚଷିବା "ହଳଧର" ବଉଁଶର ବେଉସା । ପୃଥିବୀ ସୃଷ୍ଟି ହେଲା ଦିନଠୁଁ "ହଳଧର"ର ବଉଁଶ ମାଟି ଚଷୁଛନ୍ତି । ଯୋଉ ମାଟିରେ ଦୁବ କଅଁଳେ ନାହିଁ ସେଠି "ହଳଧର" ପହଞ୍ଚିଗଲେ ଫୁଲ ଫୁଟିଉଠେ । ଯୋଉମାଟିରେ ଚଷାର ଲଙ୍ଗଳ ଲୁହା ଗଳେ ନାହିଁ, ସେ ମାଟିକୁ ବି ହଳଧର ଚାଷକରି ପକାଏ । ମାଟିତଳର କଅଁଳ ସାର

ଜନଷକୁ ଆଣି ଉପରେ ଛାଡ଼ିଦିଏ "ହଳଧର" । ତେଣୁ କଥାରେ ଅଛି—ଯୋଉ ମାଟିରେ ଜିଆ ନାହିଁ, ସେ ମାଟିରେ ଜୀବନ ନାହିଁ ।

## ବଙ୍ଗଲୋ ବା ଉଆସ ପାଇଲା

"ହଳଧର" ପ୍ରକୃତରେ କେମିତି ମାଟି ଚଷ କରେ, ଏକଥା ଜାଣିବାକୁ ଆମର ମନ ବଳିଲା । ଏଡ଼େ ନରମ, ଥାକୁଲୁ ଥୁକୁଲୁ ଜୀବଟିଏ ! ସେ ପୁଣି ତଳ ମାଟି ଉପରକୁ ଆଉ ଉପର ମାଟି ତଳକୁ କରି ଦଉଚି ? ପଥୁରିଆ ମାଟିକୁ ଖଡ଼ରା କରି ଦଉଚି ? କେମିତି ? ଏଇ କଥା ଦେଖିବା ପାଇଁ ଆମେ "ହଳଧର"କୁ ଗୋଟିଏ କାଚ ବୟେମ ଭିତରେ ରଖିଲୁ । ଆଗରୁ ଏଥିରେ ତିନି ପ୍ରସ୍ଥ ମାଟି ଦିଆଯାଇଥାଏ । ପ୍ରତି ପ୍ରସ୍ଥକୁ ଏକ ଏକ ରଙ୍ଗ କରାଯାଇଥାଏ । ସତେ କି ଭଦ୍ରଲୋକଙ୍କର ବୈଠକଖାନା କାନ୍ଥରେ ରଙ୍ଗ ଦିଆଯାଇଥାଏ ! ପ୍ରଥମ ପ୍ରସ୍ଥଟି ହଉଚି ବନମାଟି (ନାରଙ୍ଗୀ ରଙ୍ଗର), ଦ୍ୱିତୀୟ ପ୍ରସ୍ଥ ହଉଚି ପାଉଁଶିଆ ଖତ ମାଟି ଆଉ ତୃତୀୟ ପ୍ରସ୍ଥ ହଉଚି ଖାଲି ବାଲି । ଏଥିରେ ମଝିରେ ମଝିରେ ଟୋପାଏ ଟୋପାଏ ପାଣି ଦିଆ ହେଇଥାଏ । ଫଳରେ ପ୍ରତି ପ୍ରସ୍ଥ ବାଲି, ମାଟି ଆଉ ଖତ ବେଶ୍ ଜମାଟ ବାନ୍ଧି ବସି ଯାଇଥାଏ । ତା ପରେ "ହଳଧର"କୁ ଆଣି ଆମେ ଏ ବଙ୍ଗଳୋ ଦେଖେଇଦେଲୁ । ପ୍ରଥମେ ଟିକିଏ ବେଳ ମାଟି ଉପରେ ରହି "ହଳଧର" ଏଣିକି ତେଣିକି ଚାହିଁଲା । ତା'ପରେ ଖୋଷି ଦେଲା ସେ ତାର ଗୋଜଆ ନାକଟାକୁ ବାଲି ଭିତରକୁ !

## ସେ ତା କାମରେ ଲାଗିଲା

କାଚ ବୟେମ ବାହାରୁ ଆମେ ଦେଖୁଥାଉ । ଭିତରେ ଥାଇ "ହଳଧର" ଚଳେଇଥାଏ ତା କାମ ! ଓଃ ! କି ଲସର ପସର ହେଇ ସେ ଲାଗିପଡ଼ିଥାଏ କାମରେ ! ଆମ ଆଡ଼କୁ



"ସେ ତା କାମରେ ଲାଗିଲା ....."

ଚାହିଁବାକୁ ତାକୁ ଫୁରସତ୍ କାହିଁ ? ପ୍ରଥମେ "ହଳଧର" ବାଲି ଫୁଟେଇ ସିଧା ଚାଲିଗଲା ଖତ ଆଡ଼କୁ । ସେଠି ବୋଧହୁଏ ପେଟପୂରା କିଛି ଖାଇଦେଲା । ପୁଚୁ ପୁଚୁ ହେଇ ବାଲି ଉପରେ ଆସି ଜମା ହେଲା ଗୁହ ! ତା ପରେ ପୁଣି ତେଜ ଉଠିଲା "ହଳଧର" । ଏଥରକ ସିଧା ଚାଲିଗଲା ସବାତଳର ବନମାଟି ଆଡ଼କୁ । ପୁଣି ବନମାଟିରୁ ମୁହଁ ବୁଲେଇ ସେ ଖତକୁ ଆସିଲା । ସେଠି ଟିକିଏ ରହିଲା । ଏଥିମଧ୍ୟରେ ତା' ମୁହଁ ଉପର ଆଡ଼କୁ ହେଇଥାଏ । ପୁଳାଏ ଖତ ଆଉ ବାଲି ଯାଇ ବନମାଟି ସାଙ୍ଗେ ମିଶିଗଲା । ଏମିତି ଚାଲିଲା ଗୋଳିଆ ଗୋଳିଆ । ନଦ

ଗୃହିଣୀ ଯାଇଛନ୍ତି କି ନାହିଁ, ବସ୍ତ୍ରମଧ୍ୟରେ ଥିବା ତିନି ପ୍ରସ୍ଥ ରଙ୍ଗ ଆଉ ନ ଥିଲା । ସବୁ ଗୋଳେଇ ପୋଳେଇ ହୋଇ ଏକାକାର ହୋଇ ଯାଇଥିଲା । ସବା ଉପରେ ଆ କିନ୍ତୁ ଉଲୁଉଲୁ ହଉଥାଏ— ଜଆ ଗୃହରେ । ଏଇ ଗୃହ ହଉଚି ପ୍ରକୃତ ଖିତ । ଯୋଉ ମାଟିରେ ଯେତେ ଗୃହ ସେ ମାଟି ସେତେ ଉର୍ବରା ।

# ଏ ବଙ୍ଗଳୋ ଲୋଡ଼ା ନାହିଁ

ଯେତେବେଳକୁ "ହଳଧର"ର କାମ ବୋଧହୁଏ ଶେଷ ହେଇଯାଇଥିଲା । ଆମେ ଆସି ଦେଖିଲୁ ତ ମାଟି ଉପରକୁ ନାକଟିକୁ ବଢ଼େଇଦେଇ "ହଳଧର" ଅନେଇଚି । ସତେ କି ସେ କହୁଥାଏ—

"ଏ ମାଟିରୁ ମୋ କାମ ସରିଯାଇଚି ! ଏ ବଙ୍ଗଳେ ଆଉ ଲୋଡ଼ା ନାହିଁ । ମତେ ମୋ ନିଜ ଘରେ ନେଇ ଛାଡ଼ିଦିଅ ।"

ଆମେ ଜାଣୁ । ବୁଝୁ । "ହଳଧର" ଉଚ୍ଛନ୍ନ ହୁଏ ବିଶାଳ ପୃଥିବୀର ମାଟି ଭିତରକୁ ଫେରି ଯିବାକୁ । କାଚଘରର ଏତେ ଟିକେ ମାଟିରେ ତା ମନ ଆଉ ମାନେ ନାହିଁ ।

"ହଳଧର"କୁ ଆଣି ବାହାରେ ଛାଡ଼ିଦେଲୁ ଆମେ । ସାଲୁବୁଦା ମୂଳର ଥଇଥଇଆ ଥଣ୍ଡାମାଟି । "ହଳଧର" ମାଟିକୁ ଶୁଙ୍ଘିଦେଲା । ତା ପରେ ମଣିଷ ପିଲାଭଳି ସେ ଟିକିଏ ବାଲୁବାଲୁ କରି ଆମ ମୁହଁକୁ ଚାହିଁଦେଲା । ସତେ କି ପଦେ କଅଣ କହିବ ବୋଲି ତାର ଇଚ୍ଛା ହଉଥିଲା । କିନ୍ତୁ ତାର ପାଟି ଫିଟିଲା ନାହିଁ ।

ଫଟ୍‌କରି ନାକ ଲମ୍ବେଇଦେଇ "ହଳଧର" ମାଟିକୁ ଖୋଳି ଦେଲା । ନରମ ମାଟି ଭିତରେ ତା ବେକ ପର୍ଯ୍ୟନ୍ତ ଗଳି ଗଲା । ତା ପରେ ସେ ଅନ୍ତର୍ଦ୍ଧାନ ହେଇଗଲା ।

---




ଦିନେ ବଡ଼ ସକାଳେ ଆମେ ଆଖି ମଳି ମଳି ଦେଖୁଛୁ ଗୋଟାଏ ବୁଲା କାଳୀ କୁତୀ ଲାଙ୍ଗୁଡ଼ ହଲେଇ ହଲେଇ ଆମ କବାଟ ପାଖରେ ବସିଛି । ଆମେ ଯେମିତି କବାଟ ଫିଟେଇଛୁ, କୁକୁରଟା ଦି' ଗୋଡ଼ ଟେକି ଆମ ଆଡ଼କୁ ବଢ଼ିଆସିଲା । ଆମେ ଶରଚର ପାଟିଟାଏ ଲେଖାଏଁ କରି ଘର ଭିତରକୁ ପଳେଇଲୁ । ହଠାତ୍ ମୋ ମନେ ପଡ଼ିଲା, ସେ କୁକୁର ଆମକୁ ନିଶ୍ଚୟ କେଉଁଠି ଦେଖିଛି ବୋଲି । ମୋର ମନେହେଲା, ପିଲାଦିନେ ଆମର ଯୋଉ କାଳିଆ କୁକୁରଟା ଦିନେ ରାତିରେ ଅନ୍ତର୍ଦ୍ଧାନ ହୋଇଯାଇଥିଲା, ଆଉ ଆମ କୋଠିଆ କହୁଥିଲା ଯେ ତାକୁ ରାତି ଅଧରେ ଗୋଟାଏ ବାଲୁଆ ଖାଇଗଲା ବୋଲି, ସେଇ ବୋଧେ ବାଲୁଆ ପେଟରୁ ବାହାରି ପଳେଇ ଆସିଛି । ଏକଥା ମନେପଡ଼ିବା ମାତ୍ରେ ଆମେ ଆମର ସବୁତକ ସ୍ନେହ ତା ଉପରେ ଅକାଡ଼ି ଦେଲୁ । କିନ୍ତୁ ସେ ବେଶିଦିନ ନୁହେଁ । ତିନି ଦିନ ପରେ ସେ କୁକୁର କୁଆଡ଼େ ପଳେଇଲା । ପଛରେ ଆମେ ଶୁଣିଲୁ ଯେ ତାକୁ ମ୍ୟୁନିସିପାଲିଟି କୁକୁରଧରାଳି ଟୋକା ନେଇଗଲା । ସେ ବୋଧେ ମରି ସାରିବଣି । ସେକଥା ଶୁଣି ଆମେ ଦି' ଭାଇ ଦି' ଭଉଣୀ ଅକ୍‌କାମରା ହୋଇ ଆମ ବଗିଚାର ଲେଙ୍ଗଡ଼ା ଆମ୍ବଗଛ ତଳେ ବସିପଡ଼ିଲୁ । ମୋ ଭଉଣୀ ପଚାରିଲା, "କୁକୁରଧରାଳି କାହିଁକି ଆମ କୁକୁରକୁ ନେଲା ?"

ଆଉ ଭଉଣୀ ଜବାବ ଦେଲା, "ପୃଥିବୀରେ ବର୍ତ୍ତମାନ ଏତେ କୁକୁର ହେଲେଣି ଯେ ତାଙ୍କ ଭିତରୁ କେତେଟାକୁ ଯଦି ମାରି ଦିଆ ନ ଯାଏ ତା'ହେଲେ ଏ ପୃଥିବୀ ସାରା ଖାଲି କୁକୁର ହୋଇଯିବେ । ମଣିଷ ଆଉ ନ ଥିବେ ।"

## —ତେତିଶ—

ସଙ୍ଗେ ସଙ୍ଗେ ମୋ ସାନ ଭାଇ କହିଲା, "ଖାଲି କଅଣ ସେତିକି ? ଏମିତି ଦିନ ଆସିବ ଯେତେବେଳେ ଆମ ପୃଥିବୀଯାକ ଖାଲି ହୋଇଯିବ ବହି । ବର୍ଷକରେ ଯେତେ କୁକୁରଛୁଆ ହେଉଛନ୍ତି ତା ଅପେକ୍ଷା ବେଶି ବହି ପ୍ରତିବର୍ଷ କ୍ଲାସ ଉଠାବେଳେ ଆମେ କିଣୁଛେ ।"

କଥାଟା ପ୍ରକୃତରେ ଏଡ଼େ ସତ ଲାଗିଲା ଯେ ଆମେ କୁକୁର କଥା ଭୁଲିଯାଇ ବହି କଥାରେ ଭଳିଗଲୁ ।



( ପୃଥିବୀ ସାରା ଖାଲି କୁକୁର ହୋଇଯିବେ ମଣିଷଙ୍କ ପାଇଁ ଜାଗା କାହିଁ ? )

ସେଦିନ ରାତିରେ ମୁଁ ଗୋଟାଏ ସ୍ୱପ୍ନ ଦେଖିଲି । ପାହାଡ଼ଉଚ୍ଚ ବହି ସବୁ ଆମ ଘରପାଖେ ଜମା ହୋଇଛି । ପବନରେ ସେ ପାହାଡ଼ଗୁଡ଼ାକ ଦୋହଲି ଉଠୁଛନ୍ତି । କଳକାଳିଆ ହୋଇ ଆମେ ଯୁଆଡ଼େ ପଳେଇବାକୁ ବସିଲୁ, ହିଆଡ଼େ ଖାଲି ବହି, ବହି, ଆଉ ବହି । ମୁଁ ବାଲବଲେଇ ଉଠିଲି ।

ତା ପରଦିନ ସକାଳୁ ଉଠି ମୁଁ ସେଇକଥା ବିଚାର କଲି । ସତ କଥା, ଦିନକୁ ଦିନ କେତେ କୋଟି ବହି, ନୂଆ ମ୍ୟାଗାଜିନ୍ ଖବରକାଗଜ ସବୁ ପୃଥିବୀରେ ଜନ୍ମ ହେଉନାହାନ୍ତି !

ଏ ଗୁଡ଼ାକ ତ କିଛି ଗଛଲଟା ନୁହନ୍ତି ଯେ ଆମେ ତାଙ୍କୁ ମନଇଚ୍ଛା ହାଣିଦବା, ଜାଳିଦବା, ପୋଡ଼ିଦବା ! ବହିଗୁଡ଼ାକ ତ ଆମର । ତାଙ୍କୁ ମାରିବ କିଏ ?

ମତେ ଗୋଟାଏ ବୁଦ୍ଧି ଜୁଟିଲା । ମୁଁ ମୋ ସାନଭାଇ ଭଉଣୀଙ୍କୁ ଡାକି କହିଲି, "ଦେଖ, ଗୋଟାଏ କାମ କଲେ ଆମେ ବହି ଦାଉରୁ କିଛିଦିନ ପାଇଁ ବଞ୍ଚିଯାଇ ପାରିବା । ଆଗେ ଯେତେବେଳେ ବେଙ୍ଗଗୁଡ଼ାକ ମଇଁଷି ପରି ହୋଇଥିଲେ, ଆଉ ମଣିଷଗୁଡ଼ାକ କୋଡ଼ିଏ ଏକୋଇଶି ଫୁଟ ଡେଙ୍ଗା ହୋଇଥିଲେ, ସେତେବେଳେ ଭଗବାନ ଦେଖିଲେ ଯେ ଏ ଜନ୍ତୁଗୁଡ଼ାକ ଯଦି ଏଡ଼େ ବଡ଼ ହୁଅନ୍ତି ତା' ହେଲେ ଭବିଷ୍ୟତରେ ତାଙ୍କ ବଂଶଧରମାନଙ୍କ ପାଇଁ ଜାଗାର ଅଭାବ ପଡ଼ିବ । ତେଣୁ ସେ ଆମକୁ ଦିନକୁ ଦିନ ବାମନ କରି ଦେଉଛନ୍ତି । ପୃଥିବୀରେ ଜାଗା ବଞ୍ଚୁଛି । ସେମିତି ଆମେ ଯଦି ଆମ ମୋଟା ବହିଗୁଡ଼ାକୁ ବାମନ କରେଇ ଦେଇପାରନ୍ତେ, ତା'ହେଲେ ଆମର ବହୁତ ଜାଗା ବଳିପଡ଼ନ୍ତା ।"

ଆଖି ମିଟି ମିଟି କରି ମୋ ସାନ ଭଉଣୀ ପଚାରିଲା—

"ଏ କଥା କେମିତି ହେବ ? ବହିଗୁଡ଼ାକୁ କେମିତି ବାମନ କରିବା ?"

ମୁଁ କହିଲି, "ଆଚ୍ଛା, ଏଡ଼େ ବଡ଼ ପାହାଡ଼, ପର୍ବତ, ନଈ, ସମୁଦ୍ର, ଆକାଶ—ଏମାନଙ୍କୁ ବାମନ କରି ତୁମେ କେମିତି ତୁମ କାନ୍ଥ ଦିହରେ ଟାଙ୍ଗିଛ ? ସେମିତି ବହିଗୁଡ଼ାକର ଛୋଟ ଛୋଟ ଛବି ଉଠେଇ ତାଙ୍କୁ ସିନେମା ଦେଖିଲା ଭଳି ପଢ଼ିଲେ କେମିତି ହୁଅନ୍ତା ?"

ମୋ ସାନ ଭଉଣୀ କହିଲା, "ଭାଇ, ତା'ହେଲେ ଆମ ଘରେ ଏ ଯୋଉ ପାଞ୍ଚ ଆଲମାରି ବହି ଥାକମରା ହୋଇଛନ୍ତି ସେତିକର ଛବି ଉଠେଇ ଗୋଟିଏ ରିଲ୍ ଦିହରେ ଗୁଡ଼େଇ ରଖିଲେ ତ ହୁଅନ୍ତା । ପାଞ୍ଚ ଆଲମାରି ଯାକର ବହି ଗୋଟାଏ ଛୋଟ ସୁଟ୍‌କେଶ୍ ଭିତରେ ରହିଯାଇ ପାରନ୍ତା ତ ?"

ଯାହାହେଉ, ସେଦିନ ସେ କଥାଟା ଆମକୁ ଏଡ଼େ ସହଜ ଜଣାପଡ଼ିଲା ନାହିଁ । କିନ୍ତୁ ଆଜି ଯେତେବେଳେ ଆମ ଆଖିରେ ଆମେ "ମାଇକ୍ରୋଫିଲ୍ମ" ଦେଖୁଛୁ ସେତେବେଳେ ଆମ ପିଲାଦିନର ସେଇ ପିଲାଳିଆ କଥାଗୁଡ଼ାକ ଏଇଲାଗେ ମନେପଡ଼ୁଛି ।

ଆଜିକାଲି ବଡ଼ ବଡ଼ ଲାଇବ୍ରେରିରେ ବହିମାନଙ୍କର ଚିତ୍ର ନିଆହେଉଛି । ସିନେମା ଷ୍ଟୁଡ଼ିଓରେ ଛବି ଉଠେଇଲା ଭଳି, ସରୁ ସରୁ ଫିତାଭଳି ଫିଲ୍ମ ଉପରେ ବହିଗୁଡ଼ାକର ପୃଷ୍ଠା ପୃଷ୍ଠା ହୋଇ ଛବି ନିଆହେଉଛି । ଏ ଫିତାଗୁଡ଼ାକର ଚଉଡ଼ା ପ୍ରାୟ

୧୬ ମିଲିମିଟର୍ ବା ପଇଁତିରିଶ ମିଲିମିଟର୍ । ଏହାଠୁଁ ଆଉ ଅଳ୍ପ ବଡ଼ ଫିଲ୍ମ ବି ବେଳେବେଳେ ବ୍ୟବହାର ହେଉଛି । ଚିତ୍ର ନିଆ ସରିଲେ, ଯେତେବେଳେ ପଢ଼ିବା ଦରକାର ପଡ଼େ, ଠିକ୍ ସିନେମା ଦେଖିଲାଭଳି ସେଗୁଡ଼ିକର ଚିତ୍ରସବୁ ପରଦା ଉପରେ ଦେଖେଇ ଦିଆଯାଏ । ଆଃ ! କି ମଜା ! ସିନେମାକୁ ସିନେମା ଦେଖାହୁଏ, ପଢ଼ାକୁ ପଢ଼ା ବି ହୁଏ ।



( ହେ ! ସେମିତି ନୁହେଁ······ଭିତରେ ଦୃଷ୍ଟାର ଚିତ୍ର ନିଅନ୍ତୁ······ମଲ୍ଟରେ ନୁହେଁ )

ଏମିତି କରିବା ଦ୍ୱାରା ଗୋଟାଏ ବଡ଼ ସୁବିଧା ହେଉଛି ଯେ ଲାଇବ୍ରେରି-ମାନଙ୍କରେ ବହୁତ ଜାଗା ବର୍ତ୍ତମାନ ବଳୁଛି । ସେଠି ଆହୁରି ଅଧିକ ବହି ବା ଫିଲ୍ମ ଆସି ରହୁଛି । ଗୋଟାଏ ଶହେ ଫୁଟ ଲମ୍ବର ଗୋଟିଏ ଷୋହଳ ମିଲିମିଟର ଫିଲ୍ମ ଉପରେ

ଷୋହଳ ହଜାର ପୃଷ୍ଠାର ଗୋଟାଏ ଅଭିଧାନର ଚିତ୍ର ନିଆହୋଇପାରେ । ଏହାଦ୍ୱାରା କେତେ ଜାଗା ଆଉ କେତେ ଓଜନ କମେ, ଜାଣ ? ଯୋଉ ଅଭିଧାନଟାକୁ ମୋ ସାନ ଭାଇ କୁଣ୍ଢେଇ ପକେଇ ଧରି କରି ମଧ୍ୟ ଟେକିପାରେନା, ସେଇ ଅଭିଧାନର "ସୂକ୍ଷ୍ମଚିତ୍ର" ବା "ମାଇକ୍ରୋଫିଲ୍ମ"କୁ ସେ ତା ହାତ ମୁଠାଭିତରେ ଲୁଚେଇ ଧରିପାରେ ।

ଏହାଛଡ଼ା ବହିଗୁଡ଼ାକ ଯେତେ ଯେତେ ପୁରୁଣା ହେବ, ତା' ଉପରେ ସେତକ ସେତକ ବିପଦ ମାଡ଼ି ଆସିବ । ପୋକ ଖାଇଯିବାର ଭୟ ଅଛି । କାଗଜ ସବୁ ପୁରୁଣା ହୋଇଗଲେ ତା ମନକୁ ଛିଣ୍ଡି ପଡ଼ିବ । ତା ଛଡ଼ା ନିଆଁ ପାଣି ଭୟ ତ ସଦାବେଳେ ଲାଗିଛି । କିନ୍ତୁ ଏ ସବୁ ବହି ବା କାଗଜପତ୍ରର ଚିତ୍ର ନେଇଯାଇ ତାକୁ କାଇଦାରେ ଲୁହା ବାକ୍ସ ଭିତରେ ରଖିଲେ ସେଗୁଡ଼ିକ ନଷ୍ଟ ହେବନାହିଁ । ଜାଗା ଯେତେ ଶ୍ରେଷ୍ଠ ହେବ ଆମେ ସେତେ ହେପାଜତ୍ କରିପାରିବା ସେଇ ଜାଗାରେ ରହିଥିବା ଜିନିଷଗୁଡ଼ିକର ।

ଦ୍ୱିତୀୟ ମହାଯୁଦ୍ଧ ବେଳେ କଅଣ ହେଲା ? ଇଂଲଣ୍ଡ ଉପରେ ଯେତେବେଳେ ଲଢ଼ୁଆ ଜର୍ମାନୀ ଉଡ଼ାଜାହାଜ ସବୁ ବୋମାବର୍ଷଣ କଲେ, ସେତେବେଳେ ସେଠାକାର ବଡ଼ ବଡ଼ ଲାଇବ୍ରେରୀର ମାଲିକମାନଙ୍କୁ ବୁଦ୍ଧି ବାଟ ଦେଖାଗଲା ନାହିଁ । ଏତେ ବହି ଏତେ ପୁରୁଣା ବହି ସବୁ ନେବେ କୋଉଠିକି ? ଗୁଡ଼ାଏ ବହିରେ ତ ହାତ ବାଜିଲେ ତାର ପୃଷ୍ଠାଗୁଡ଼ାକ ଝଡ଼ି ପଡ଼ୁଥାଏ । ସେଇ ସମୟରେ ଅନେକ ମୂଲ୍ୟବାନ୍ ବହି ଧ୍ୱଂସ ହୋଇଗଲା । ସେଗୁଡ଼ିକର ଆଉ ଦ୍ୱିତୀୟ ଖଣ୍ଡ ବି ନଥିଲା ।

ବହି ହେଉଚି ମଣିଷର ପ୍ରକୃତ ଜୀବନ । ଗୋଟାଏ ଘର କି ପୋଲ ଭାଙ୍ଗିଗଲେ ପଇସା ଖର୍ଚ୍ଚ କରି ଆଉ ଗୋଟାଏ ତା ଜାଗାରେ ଠିଆ କରାଇ ଦେଇ ହେବ, କିନ୍ତୁ ଖଣ୍ଡିଏ ପୁରୁଣା ଦୁଷ୍ପ୍ରାପ୍ୟ ବହି ଯଦି ନଷ୍ଟ ହୋଇଗଲା, ସେ ବହି ତ ଆଉ ମିଳିବ ନାହିଁ । ହୁଏତ ସେଇ ବହିଖଣ୍ଡିକ ପାଇଁ ଆମ ସଭ୍ୟତା ଆଉ କିଛିଦିନ ଆଗେଇ ଯାଇପାରିବ ନାହିଁ । ଆମେ ଯଦି ଆଜି ଭାବୁଛେ ଯେ ଆଉ ଦଶ ବର୍ଷ ଭିତରେ ଆମେ ଚନ୍ଦ୍ରକୁ ଯିବା ବୋଲି; ଖଣ୍ଡେ ବହି ଅଭାବରେ କଥା ଏମିତି ଗୋଳମାଳିଆ ହୋଇଯିବ ଯେ ଦଶ ବର୍ଷ କଅଣ, ଚନ୍ଦ୍ରକୁ ଯିବାକୁ ମଣିଷକୁ ଆଉ ଶହେ ବର୍ଷ ବି ଲାଗିଯାଇ ପାରେ । ତେଣୁ ବହିକୁ ଅମର, ଅଜର କରି ଗଢ଼ିବା ହେଲା ଆମର ଲକ୍ଷ୍ୟ । ସେଥିସହିତ ଏହି ବହିଗୁଡ଼ିକ ଯେମିତି ଆମ ଘରୁ ବେଶି ଥାନ ମାଡ଼ି ନ ବସନ୍ତି; ସେଥିପ୍ରତି ମଧ୍ୟ ଆମର ଦୃଷ୍ଟି ରଖିବା ଉଚିତ ।

ଏଥିପାଇଁ ବୈଜ୍ଞାନିକମାନେ ଆଜି ଲାଗି ପଡ଼ିଛନ୍ତି । ବହିର ସୂକ୍ଷ୍ମଚିତ୍ର ଗ୍ରହଣ କରିବା ପାଇଁ ନୂଆ ନୂଆ ଉପାୟ ସବୁ ଚିନ୍ତା କରାଯାଉଛି ।



# ତୋ ପିଠିରେ ପୁଲସ୍ ପଡ଼ିଲେଣି ଯେ !

ଦିନେ ଇନ୍ଦ୍ରଜିତ ବୋଲି ସ୍କୁଲ ପିଲାଟିଏ ରାସ୍ତାରେ ଯାଉଥିଲା । ଖରାଉଦିଆ ଦି'ପହର ବେଳ । ଏହି ସମୟରେ ପଛରେ କାହାର ପାଦ ଶବ୍ଦ ଶୁଣି ଇନ୍ଦ୍ରଜିତ ଚମକି ପଡ଼ିଲା । ପଛକୁ ଚାହିଁ ସେ ଦେଖିଲା ଯେ ଗୋଟିଏ ଦାଢ଼ିଆ ବୁଢ଼ା ତା' ପଛେ ପଛେ ଚାଲିଛି ।

ଇନ୍ଦ୍ରଜିତ ଟିକିଏ ଶଙ୍କିଯାଇ ଠିଆ ହୋଇଗଲା । ବୁଢ଼ା ବି ତା ଦେଖାଦେଖି ଠିଆ ହୋଇଗଲା । ଇନ୍ଦ୍ରଜିତ ଆଶ୍ଚର୍ଯ୍ୟ ହେଲା । ଏ କ'ଣ ! ଲୋକଟି କାହିଁକି ତା ପିଛା ପଡ଼ିଛି ?

ଇନ୍ଦ୍ରଜିତ ଡରି ଡରି ପଚାରିଲା—

"ଆପଣ କିଏ ?"

"ମୁଁ ?" ବୁଢ଼ା ବି ଡରି ଯାଉଥିଲା କି କଅଣ । ଇନ୍ଦ୍ରଜିତଠାରୁ ଟିକିଏ ଦୂରେଇଯାଇ ହୋଇ ଠିଆ ହୋଇ ସେ ପଚାରିଲା—

"ମୁଁ ତ ଗୋଟିଏ ବୁଢ଼ା । ହେଲେ ତୁମେ କିଏ ? ତୁମ କାନ୍ଧରେ ଯେ ଯେ ବସିଛି, ସେ କିଏ ?"

"ଏଁ ? ମୋ କାନ୍ଧରେ ବସିଛି ।" ଇନ୍ଦ୍ରଜିତ ଚମକି ଚାହିଁଲା ତା ନିଜ କାନ୍ଧକୁ । ସେ ବୋଧହୁଏ ଭୁଲି ଯାଇଥିଲା । ତା ପରେ ଟିକିଏ ହସିଦେଇ ସେ ବୁଢ଼ା କଥାର ଉତ୍ତର ଦେଇ କହିଲା—

"ଓଃ । ଏଇଆକୁ ଦେଖି ଡରୁଛ ? ଏ ତ ମୋ ପୋଷା ପେଚା । ଯାହା ନାଁ ପୁଲସ୍ । ନାଁ ରେ ?" ଇନ୍ଦ୍ରଜିତ ତା କାନ୍ଧରେ ବସିଥିବା ପେଚାକୁ ଚାହିଁ ପଚାରିଲା ।

ପେଚାଟି ଚୁପ୍ ହୋଇ ଆଖି ବୁଜିଥିଲା । ଇନ୍ଦ୍ରଜିତ କଥାରେ ତାର ନିଦ ଭାଙ୍ଗି ଗଲା । ଟିକିଏ କଟମଟ କରି ଅନେଇ ଦେଇ ପେଚା ଜବାବ ଦେଲା ଭଳି କହିଲା—

"ହୁଉଃ······ହୁଁ ।"

ପେଚାର ଉତ୍ତର ଶୁଣି ବୁଢ଼ା ଡରରେ ପଛକୁ ପାଦେ ଘୁଞ୍ଚିଯାଇ କହିଲା— "ଆରେ ବାପ୍‌ରେ ବାପ୍ ।"

ତା ପରେ ଟିକିଏ ରହି ବୁଢ଼ା ପୁଣି ପଚାରିଲା—

"ଆଚ୍ଛା, ଯୁ'ା ନାଁ ପୁଲସ୍ କାହିଁକି ଦେଇଛ ?"

"କାରଣ ରାତିରେ ଯୁ'ାକୁ ନେଇ ମୁଁ ଶିକାର କରିବାକୁ ଯାଏ । ଅନ୍ଧାରହେଲେ ନାନା ଜାତିର ମୂଷା ଆଉ ବେଙ୍ଗ ବାହାରନ୍ତି । ଏମାନେ ଦିନରେ ପ୍ରାୟ ଦେଖାଯାନ୍ତି ନାହିଁ ।



( "ଦୁହେଁ ଛକାଛକି ହେଲେ······" )

କିନ୍ତୁ 'ପୁଲସ୍'କୁ ସାଙ୍ଗରେ ନେଇ ମୁଁ ଏ ଜନ୍ତୁଙ୍କୁ ଅନୁସନ୍ଧାନ କରେ । 'ପୁଲସ୍' ରାତିରେ ସବୁ ଦେଖିପାରେ ।"

"ମୂଷା ଆଉ ବେଙ୍ଗ ନେଇ ତୁମେ କଅଣ କର ?" ବୁଢ଼ା ପଚାରିଲା ।

"ଆମ ଘର ପାଖେ ଜଣେ ପ୍ରାଣୀବିଜ୍ଞାନବିତ୍ ପ୍ରଫେସର ଅଛନ୍ତି । ସେ ଏମାନଙ୍କୁ ନେଇ ଗବେଷଣା କରନ୍ତି । ପ୍ରତ୍ୟେକଟି ମୂଷାକୁ ଏକ ଅଣା ଆଉ ବେଙ୍ଗପେଇଁ ଦୁଇ ନଆପଇସା ମିଳେ । ଏ ପଇସା ନେଇ ମୁଁ ମାସ ଶେଷରେ ସ୍କୁଲ ଦରମା ଦିଏ । 'ପୁଲସ୍' ମୋର ଏତିକି ଉପକାର କରେ ।" ଇନ୍ଦ୍ରଜିତ ଉତ୍ତର ଦେଲା ।

"ଓ ! ଅବିକଳ ସେଇ କଥା ତ ।" ବୁଢ଼ା ଟିକିଏ ହସିଦେଲା ।

"କୋଉ କଥା ? ହସିଲ କାହିଁକି ?" ଇନ୍ଦ୍ରଜିତ ପଚାରିଲା ।

ବୁଢ଼ା ଉତ୍ତର ଦେଲା—

"ନାଇଁ ମ କିଛି ନୁହେଁ । ମୁଁ ବି ଜଣେ 'ପୁଲସ୍' । ସେଇଥିପାଇଁ ହସିଲି ।

"ଏଁ ? ତୁମେ ପୁଲସ୍ ।" ଇନ୍ଦ୍ରଜିତ ବୁଢ଼ାର ତାଳୁଠୁ ତଳପାଯାକେ ଚାହିଁ କହିଲା ।

ବୁଢ଼ା କହିଲା, "ହଁ, ମୁଁ ଜଣେ ଗୁପ୍ତ 'ପୁଲସ୍' । ଏଠି ଗୋଟାଏ କଥା ଖୋଜୁଛି ।"

"କୋଉ କଥା—କ'ଣ ଚୋରି ହୋଇଯାଇଥିବା ଜିନିଷ ?" ଇନ୍ଦ୍ରଜିତ ପଚାରିଲା ।

"ନାଇଁ, ଗୋଟାଏ ନ ମିଳୁଥିବା ଜିନିଷ ।—କିରାସିନି ।"

"କିରାସିନି ?" ଇନ୍ଦ୍ରଜିତ ଆଶ୍ଚର୍ଯ୍ୟ ହୋଇଗଲା । ଲୋକଟା ବାୟାଟାଏ ନା କଅଣ ? କିରାସିନି ତେଲ କଅଣ ରାସ୍ତାରେ ମିଳେ ?

ଇନ୍ଦ୍ରଜିତକୁ ଆଶ୍ଚର୍ଯ୍ୟ ହେବାର ଦେଖି ବୁଢ଼ା କହିଲା—

"ଶୁଣ । ତମ କାନ୍ଧ ଉପରେ ଯେ ବସିଚି, ସେ ଯେମିତି ଅନ୍ଧାରରେ ଦେଖିପାରେ । ସେହିପରି ଆମେ ସବୁ ହଜାର ହଜାର ଫୁଟ ମାଟିତଳର ଜିନିଷକୁ ଦେଖିପାରୁ । ତେଣୁ ମୁଁ ବି ଏକ 'ପୁଲସ୍' ।"

"ହଜାର ହଜାର ଫୁଟ ମାଟିତଳର ଜିନିଷ କେମିତି ତୁମ ଆଖିକୁ ଦେଖାଯାଏ ?" ଇନ୍ଦ୍ରଜିତ ପଚାରିଲା ।

ବୁଢ଼ା ତା' ମୁଣିରେ ହାତ ପୂରେଇ କଅଣ ଗୋଟିଏ ଯନ୍ତ୍ର ବାହାର କରି ଆଣିଲା । ସେଇଟିକୁ ଇନ୍ଦ୍ରଜିତକୁ ଦେଖେଇ ବୁଢ଼ା କହିଲା—

"ଆମେ ଖଣିବିଭାଗର ଲୋକ । ଏ ଯନ୍ତ୍ର ସାହାଯ୍ୟରେ ଆମେ ବାହାରେ ଥାଇ ପୃଥିବୀର ପେଟ ଭିତର କଥା ଜାଣି ନେଇପାରୁ । ମାଟି ତଳେ ତରଳ ପଦାର୍ଥ ଅଛି କି ନାହିଁ, ତାହା ଏଇ ଯନ୍ତ୍ର ସାହାଯ୍ୟରେ ଜଣାଯାଏ ।"

ଇନ୍ଦ୍ରଜିତ ବୁଢ଼ା ପାଖକୁ ଲାଗି ଆସିଲା । ବୁଢ଼ା ହାତର ଛୋଟ ଯନ୍ତ୍ରଟିକୁ ନେଇ ତାକୁ ଓଲଟପାଲଟ କରି ପରୀକ୍ଷା କଲା । ଯନ୍ତ୍ରରେ ଲାଗିଥିବା କାଚ ତଳୁ ଗୋଟିଏ ଘଣ୍ଟାକଣ୍ଟା ଭଳି ନାଲି କଣ୍ଟାକୁ ବି ଦେଖି ପାରିଲା ।

ବୁଢ଼ା କହିଲା—

—ଶେଷ—

"ଠାଆକୁ ଠାଆ ବୁଲି ଆମେ ତେଲଖଣି ଅନୁସନ୍ଧାନ କରୁ । ଯେଉଁଠି ଆମେ ସନ୍ଦେହ କରୁ ତେଲ ଅଛି ବୋଲି, ସେଠି ଆମେ ଏ ଯନ୍ତ୍ରକୁ ବ୍ୟବହାର କରୁ । ପ୍ରଥମେ ସାବଲ ନେଇ ସରୁ ଗାତଟିଏ କରୁ । ତା ପରେ ସେ ଗାତରେ ବାରୁଦ ଖୁନ୍ଦିଦଉ । ଟିକିଏ ଦୂରରେ ମାଟି ଖୋଳି ଏ ଯନ୍ତ୍ରଟିକୁ ପୋତିଦଉ । ତା ପରେ ବାରୁଦରେ ନିଆଁ ଲଗେଇ ଦଉ । ବାରୁଦ ତୋ କରି ଫୁଟେ । ବାରୁଦ ଫୁଟିବା ଶବ୍ଦରେ ମାଟି ଥୁଲୁକି ଉଠେ । ମାଟିକୁ ଥରାଇ ଥରାଇ ଶବ୍ଦ ମାଟି ଭିତରକୁ ପଶିଯାଏ । ମାଟି ଭିତରେ ଯେଉଁଠି ତରଳ ପଦାର୍ଥ ଥାଏ, ସେଠି ପହଞ୍ଚିଯାଇ ଶବ୍ଦ ଧକ୍କା ଖାଇ ପୁଣି ପଛକୁ ଫେରେ । ଏହାକୁ ଶବ୍ଦର ପ୍ରତିଧ୍ୱନି କୁହାଯାଏ । ପାହାଡ଼ଠୁଁ ଟିକିଏ ଦୂରରେ ଠିଆ ହୋଇ ପାଟିକଲେ ତମେ ଶବ୍ଦର ପ୍ରତିଧ୍ୱନି ଶୁଣିପାରିବ । ମାଟି ତଳର ତରଳ ପଦାର୍ଥରୁ ସେହିପରି ପ୍ରତିଧ୍ୱନି ଶୁଣାଯାଏ । ମାଟିତଳର ପ୍ରତିଧ୍ୱନିକୁ ଯନ୍ତ୍ର ସାହାଯ୍ୟରେ ଧରିହୁଏ । ଯନ୍ତ୍ରର ମିଟର କଣ୍ଟା ଦେଖି କହି ଦେଇ ହେବ ମାଟିତଳେ କେତେ ଦୂରରେ କି ପ୍ରକାର ଜିନିଷମାନ ଅଛି ବୋଲି ।"

ଇନ୍ଦ୍ରଜିତ ଆଶ୍ଚର୍ଯ୍ୟ ହୋଇ ବୁଢ଼ା ଭଦ୍ରଲୋକଙ୍କୁ ପଚାରିଲା, "ଆପଣ ତା'ହେଲେ ଖଣିବିଭାଗର ଇଞ୍ଜିନିୟର ।"

ମୁଣ୍ଡ ହଲେଇ ବୁଢ଼ା କହିଲା—

"ହଁ ଟିକିଏ ଦୂରରେ ଆମ ତମ୍ବୁ ପଡ଼ିଚି । ସେଠି ଆହୁରି ଅନେକ ବିଶେଷଜ୍ଞ ଅଛନ୍ତି । ଆମେ ଶୁଣୁଛୁ ଯେ ତମର ଏଠି ମାଟିତଳେ ପେଟ୍ରୋଲିୟମ ଅଛି । କାଲି ଏ ଅଞ୍ଚଳର ମାଟି ପରୀକ୍ଷା ହେବ ।"

ବୁଢ଼ା ଭଦ୍ରଲୋକ ଚାଲିଗଲେ ।

ଇନ୍ଦ୍ରଜିତ ଆଶ୍ଚର୍ଯ୍ୟ ହୋଇ ମାଟିକୁ ଅନେଇ ରହିଲା । କେତେବେଳକେ ତା ପାଟିରୁ ବାହାରିଲା—

"ଧନ୍ୟରେ ମାଟି । ତୋ ପେଟରେ କେତେ କଥା ଅଛି । ଖାଲି ବେଙ୍ଗ ଆଉ ମୂଷା ନୁହଁନ୍ତି, ପେଟ୍ରୋଲ ବି ଅଛି ତୋ ପେଟରେ ? ହଉ ହଉ, ତୋ ପିଠି ଧୂଳିସ୍ ପଡ଼ିଲେଣି ଯେ ।"

---